# ବସନ୍ତ ରାହାସ



ଚିକିଟି ଅଧୀଶ୍ୱର

ଶ୍ରୀ କିଶୋରଚନ୍ଦ୍ର ରାଜେନ୍ଦ୍ରଦେବଙ୍କ

ବିରଚିତ

ଶ୍ରୀ ରାଧାମୋହନ ରାଜେନ୍ଦ୍ରଦେବଙ୍କ

ଦ୍ୱାରା ସଂଶୋଧିତ

ପ୍ରଥମ ମୁଦ୍ରଣ—୧୯୫୮

ପ୍ରକାଶକ:

ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ

ନିଉକାପିଟାଲ୍, ଭୁବନେଶ୍ୱର

ମୂଲ୍ୟ—ଏକ ଟଙ୍କା ପଞ୍ଚାଶ ନୂ: ପ:



# [ ଲୀଳା ]

## ବନ୍ଦନା

(ରାଗ—ପାଞ୍ଚାକୁଣ୍ଡାନାରୀ—ପ୍ରସ୍ତ)

ଜୟ ତ୍ରିଭୁବନ ଭକ୍ତଜନ ମନ
ସଙ୍କଳ୍ପ କଳପ ଦ୍ରୁମାକାର
ଦଶବର୍ଣ୍ଣ ହ୍ରଦ ଆନନ୍ଦ ସମୁଦ୍ର
ବରଧନ ପୂର୍ଣ୍ଣ ସୁଧାକର । ପଦ ।

ବ୍ରଜନାରୀ ବ୍ରଜ ମଦନ ପଙ୍କଜ
ମଧୁପାନ ମତ୍ତ ମଧୁକର,
ଅଖିଳ ସଂସାର ଛବ କାରାଗାର
ସନ୍ତଜନ ଧୃତ ଧନ ଚୈର ।୧।

ତରୁଣୀ ଜାତିର ଧରଣୀ ବିହାର
କଉତୁକ କୃପା ଅକୂପାର,
ନିଶାଖା କେତକୀ ସୁମନ ସେ କେକୀ
ଚନ୍ଦ୍ରକ ନିର୍ମିତ ଝଁରିଶିର ।୨।

ହରିହମ୍ବ ମାଳ ରତନ ତମାଳ
ଜଳଦ ଶ୍ୟାମଳ କଳେବର,
ବିଦ୍ୟୁତ ଚପଳ ହେମ ବିଦଳିତ
ହରିତାଳଜିତ ପୀତାମ୍ବର ।୩।

ଶ୍ରୀ କିଶୋରଚନ୍ଦ୍ର ଦେବ ରାଜଇନ୍ଦ୍ର
ନୃପମଣ୍ଡଳୀ ମଉଳୀ ହୀର,
କରେ ପୁଷ୍ପାଞ୍ଜଳି ଅଭିଷ୍ଟକୁ ଭଳି
ତୁମ୍ଭ ସରସିଜ ଶ୍ରୀପଦୂର ।୪।

---

ହେ ସଭାସଦ୍‌ଗଣ, ଶ୍ରବଣ କରନ୍ତୁ—ଶ୍ରୀଶ୍ରୀଶ୍ରୀ କିଶୋରଚନ୍ଦ୍ର ରାଜେନ୍ଦ୍ରଦେବ ରାଜାଙ୍କ ରଚିତ ଉତ୍କଳ ବସନ୍ତ ରାହାସ ନାମକ ନବୀନ ନାଟକ ପ୍ରୟୋଗ କରିବାକୁ ଆମ୍ଭ ପାତ୍ରମାନେ ବେଶ ଧାରଣ କରିଅଛନ୍ତି ।

*ପାରି—କିପରି ନିର୍ମିତରେ ଆମ୍ଭ ପାତ୍ରମାନେ ବେଶ ଧାରଣ କଲେ ?

---

୨ୟ ପୃଷ୍ଠାର * ଚିହ୍ନଠାରୁ ୬ଷ୍ଠ ପୃଷ୍ଠାର * ଚିହ୍ନ ପର୍ଯ୍ୟନ୍ତ ବିଦଗ୍ଧମାଧବ ନାଟକର ।

ସୂତ୍ରଧାର—

ଯଦ୍ୟପି କବିର    ନୋହୁଛି ଲଳିତ
ମୋହ ଏ ନାଟକରେ
ହରିନାମାମୃତ    ଯୋଗରୁ ପତ୍ରିତ-
ବୁଧ ଶୁଣିବେ ମୋଦରେ । ପଦ ।

ହେଉ କୂପଜଳ    ଯେବେ ତାହା ଶାଳ-
ଗ୍ରାମ ସ୍ନାର୍ଥ ହୋଇବ,
କେହୁଁ ସାଧୁ ତାହା    ନମ୍ର ମସ୍ତକରେ
ଗ୍ରହଣ ନ କରିବ ?

ପାରି—"ମୁଁ ନୃତ୍ୟକାର ହୋଇ ଆପଣମାନଙ୍କ ନିକଟରେ ଲଜ୍ଜା-ତ୍ୟାଗ ପୂର୍ବକ କିଛି କହିବାକୁ ବସିଅଛି । ଅତଏବ ମୋହର ଏହି ଚାପଳ୍ୟ ଦୋଷକୁ କ୍ଷମା କରନ୍ତୁ ।" ଏପରି ପ୍ରଣାମ କରି—

ସୂତ୍ରଧାର—ଏ ହେତୁରୁ ସମ୍ପ୍ରତି ଅଭୀଷ୍ଟ ଦେବ ବିଘ୍ନରାଜ-ଶାରଦାଙ୍କୁ ବନ୍ଦନା କରି ନୃତ୍ୟମାଧୁରୀ ପ୍ରକାଶ କରିବ । (ଅଞ୍ଜଳି କରି)

(ବନଜମୁଖୀ—ପ୍ରଭୁ—ରୂପକ ତାଳ)

ଦ୍ୱିରଦମୁଖ    ବରଦ୍ୟୁ ସୁଖ    ମୋକ୍ଷକାରଣ
ହର ତନୟ    ସୁର ନିଚୟ    ସେବିତ ଚରଣ । ପଦ ।

ବନ୍ଦିତ ଜନ    ଜନିତ ଘନ    ବିଘ୍ନସୂଦନ
ଅଭୟବର    କଳିତକର    ଆଖୁବାହନ । ୧ ।

ମୋର ମାନସ ବଡ଼ ସାହସ ପଥେ ଗମନ,
କରଇ ପୂଅ- ଉଦର ଏଥୁ ରଖ ବଦନ । ୨ ।

ନଗର ପର କର ପୂର ଚଳେ ପାଳନ
କଶୋରଚନ୍ଦ୍ର ଗଜଇନ୍ଦ୍ର ଛନ୍ଦେ ବନ୍ଦନ । ୩ ।

(ଗଜାନନ ପ୍ରବେଶ)

ସୂତ୍ରଧାର—ପ୍ରଭୁ ଗଜାନନ, ତୁମ୍ଭ ଚରଣରେ ପ୍ରଣାମ କରୁଅଛୁ ।

ଗଜାନନ—ବତ୍ସ ସୂତ୍ରଧାର, ତୋହର କଲ୍ୟାଣ ହେଉ । ଏବେ ମୁଁ କୈଳାସପର୍ବତସ୍ଥିତ ପିତାଙ୍କ ଅଙ୍କରେ ବସିଥିଲି । ଏହି ସମୟରେ ତୋହ ଧନବାଣୀ ଶୁଣି ଏଠାକୁ ଆସିଅଛୁ । କ ମନୋରଥ ପ୍ରାର୍ଥନା କର ।

ସୂତ୍ର—ମୋ ନାଟକର ବିଘ୍ନ ଦୂର କରିବାକୁ ଏବଂ ପାତ୍ରମାନଙ୍କୁ ବାକ୍‌ଶକ୍ତି ଦେବାକୁ ଜଣା କରୁଅଛୁ ।

ଗଜା—ବତ୍ସ ସୂତ୍ରଧାର, ତୋ ନାଟକର ବିଘ୍ନ ଦୂର ହେବ, ମାତ୍ର ପାତ୍ରମାନଙ୍କ ବାକ୍‌ଶକ୍ତି ନିମିତ୍ତେ ବ୍ରହ୍ମପୁତ୍ରୀ ଶାରଦାଙ୍କୁ ସ୍ତୋତ୍ର କର । ଏବେ ମୁଁ କୈଳାସ ଯାଉଅଛୁ ।

ସୂତ୍ର—ଯେ ଆଜ୍ଞା ।

(ଯବନିକା ପତନ)

ସୂତ୍ରଧାର—

( ଶାରଦେ ପ୍ରଭ )

ଭରତ ନମିତ ଶ୍ରୀପଦ ମତ୍ତଗଜଗତ ସରରୁହ ନେତ୍ରି
ବରତାରହାର ଶାରଦା ଊପାରଦ ଗାତ୍ରି । ପଦ ।

ହୃଦୟ ମଧ୍ୟଜତହର ସକଳ ଶୁଭକାର୍ଯ୍ୟ ମନୋହର ଅଙ୍ଗି
ପରିପୂର୍ଣ୍ଣ ଦିବ୍ୟ କରୁଣାରସ ଲସିତାପାଙ୍ଗି । ୧ ।

ବନ୍ଦିତ ଚରାଚର ହିତେ ଚତୁର୍ମୁଖ ସୁତେ ଭକ୍ତ ଅନୁକୂଳେ
ଆମ୍ନାୟ ଚୂତ ଉଦ୍ୟାନ ମତ୍ତ କୋକଳେ । ୨ ।

ପୋଷିଣୀ ଜାଡ୍ୟ ଶୋଷିଣୀ ବିବୁଧ ତୋଷିଣୀ ବରାଭୟ ହସ୍ତେ
ରାଜଦେବପଦ-କଣ୍ଠସଞ୍ଚାରିଣୀ ନମସ୍ତେ । ୩ ।

(ସରସ୍ୱତୀ ଆବିର୍ଭାବ)

ସୂତ୍ର—ମାତଃ ସରସ୍ୱତି ! ତୁମ୍ଭ ଚରଣରେ ପ୍ରଣାମ କରୁଅଛି ।

ସରସ୍ୱତୀ—ବତ୍ସ ସୂତ୍ରଧାର ! ମୋହର କଲ୍ୟାଣ ହେଉ । ସମ୍ପ୍ରତି ମୁଁ ସତ୍ୟଲୋକେ ପିତାଙ୍କ ଦକ୍ଷିଣ ଜାନୁ ଉପରେ ବସିଥିଲି, ଏହି ସମୟରେ ତୋହ ଧ୍ୱନବାଣୀ ଶୁଣି ଏଠାକୁ ଆସିଅଛି । କି ଇଚ୍ଛା ପ୍ରାର୍ଥନା କର ।

ସୂତ୍ର—ମାତଃ ! ମୋର ପାତ୍ରମାନଙ୍କର ବାକ୍‌ଶକ୍ତି ହେଉ, ଏହା ମୋର କାମନା ।

ସରସ୍ୱତୀ—ବତ୍ସ ! ମୋର ପ୍ରଭାବରୁ ମୂକ ବାଗ୍ମୀ ହୋଇପାରେ । ଅତଏବ ତୋହ ପାତ୍ରମାନଙ୍କର ଉତ୍ତମ ବାକ୍‌ଶକ୍ତି ହେଉ । ଏବେ ମୁଁ ସତ୍ୟଲୋକକୁ ଗମନ କରିବି ।

ସୂତ୍ର—ଯେ ଆଜ୍ଞା ।

(ମାରିଷ ପ୍ରବେଶ)

ମାରିଷ—ଭାବ ! ଦେଖ ଦେଖ ।

(ଶାମାମୃଧାର ଶସ୍ୱର—ପ୍ରଭ)

ଗୋପେନ୍ଦ୍ର ପ୍ରିୟ ତନୁଜ ଯୁବରାଜ ବୃନ୍ଦାବନ ଦ୍ୱିଜରାଜ । ପଦ ।
ସୁଧା ସୁମଧୁର ମୁରଲିକା ସ୍ୱର ମୋହିତ ଗୋପୀସମାଜ । ୧ ।
ଭ୍ରୂଭଙ୍ଗୀ ଚଳିତ ଲୀଳା ପରିଦ୍ରୁତ ନିଖିଳ ସାଧ୍ୱୀଧୈର୍ଯ୍ୟ । ୨ ।
ମହେନ୍ଦ୍ର ରତନ ନୀଳ ଅପଘନ ଧିକ୍କୃତ କୋଟି ମନୋଜ । ୩ ।
ବିଦ୍ୟୁତ ଚହଟ ଜିତ ପୀତପଟ ବିଶ୍ୱମହୀରୁହ ବୀଜ । ୪ ।
ନିଖିଳ ଭୁବନ ପ୍ରପନ୍ନାର୍ତ୍ତି ଜନ କାମଦ ପାଦ ସରୋଜ । ୫ ।
*ଭଜେ ଶ୍ରୀ କିଶୋରଚନ୍ଦ୍ର ରାଜ ସୁରନାଥ ନୃପଶିର ତାଜ । ୬ ।

ବନ୍ଦନା—

(ଜୟ ଶ୍ରୀ ଶଚୀନନ୍ଦନ—ପ୍ରଭ)

ଭୁବନାନନ୍ଦବର୍ଦ୍ଧନ
ବନ୍ଦେ ହେ ବିଧିଶିବାମରବୃନ୍ଦବନ୍ଦିତପାଦ ଚନ୍ଦ୍ର ନିଭାନନ
ସଦ୍ୟ ତପ୍ତ ସୁବର୍ଣ୍ଣକାନ୍ତି ପ୍ରକର ଭାସୁର ସୁବସନ । ପଦ ।

କଳିନ୍ଦାତ୍ମଜା ପୁଳିନ-
ବନ୍ୟା କୁଞ୍ଜବିହାରୀ ନନ୍ଦନନ୍ଦନ
ପାଳିତାଖିଳ ଗୋପମଣ୍ଡଳ କେକିପୁଚ୍ଛ ସୁଶୋଭନ
ନବ୍ୟ ବାରିଦ ମେଚକାକୃତି ଲକ୍ଷ୍ମୀହୃଦୟ ନିକେତନ । ୧ ।

ଯାମଳାର୍ଜ୍ଜୁନ ଭଞ୍ଜନ
ପୂର୍ଣ୍ଣବ୍ରହ୍ମ ସୁଦାମା-ଦୁଃଖ-ଖଣ୍ଡନ
ଗୋପିକାସ୍ତନ କୁଙ୍କୁମାଙ୍କିତ ବକ୍ଷରକ୍ଷ ନିଶୋଦନ
କାଳୀୟ ଉରଗ ଭୋଗଲକ୍ଷ୍ୟ ବିନୋଦ ପଦ୍ମବିଲୋଚନ । ୨ ।

ଚକ୍ରିହି ନୃପ କିଶୋର-
ଚନ୍ଦ୍ର ରାଜ ଅମରାବତୀଈଶ୍ୱର
ଭାଷିଲେ ଅତି ମୋଦରେ ତୁମ୍ଭ ନାମ କରି ଉଚ୍ଚାରଣ
ଶୀଘ୍ରରେ କର ମାନସ ସୁଭବ ଶପଥିତ ନିବାରଣ । ୩ ।

*ସୂତ୍ର—ମାରିଷ ! ଅରସିକ ଲୋକଙ୍କ ବିମୁଖତାକୁ ଆଶଙ୍କା କରି ମୁଁ ଶୀଘ୍ର ଆରମ୍ଭ କରିପାରୁ ନାହିଁ ।

ମାରିଷ—ଭାବ ! କିପାଇଁ ଏପରି ଶଙ୍କା ? ହେତୁ କି ?

ସୂତ୍ର— (ବଣ୍ଡି)

ଏଥି ବିମୁଖ ପାଇଲେ ହେ ଅରସିକେ
ସୁଖ ଲଭିବେ ତ ନିଶ୍ଚୟେ ସୁବିବେକେ ।
ନବ ଚୂତକୁ ଛାଡ଼ିଲେ ଉଷ୍ଟ୍ର ମୂଢ଼
ପରଭୃତର ପ୍ରେମ ତ ତହିଁ ଗାଢ଼ ।

ଅତଏବ ସଭାସଦଙ୍କର ଚିତ୍ତଚମତ୍କାର ହେଲାପରି ଗାନ୍ଧର୍ବ ବ୍ରହ୍ମବିଦ୍ୟା ଆରମ୍ଭ କରିବ ।

* (ସର୍ବେ ନିଷ୍କ୍ରାନ୍ତ)

" ଉଭୟ * ଚିହ୍ନ ମଧ୍ୟସ୍ଥ ବିଷୟ ବିଦଗ୍ଧମାଧବ ନାଟକର ।

ଗାହାକ—

(ରାଗ—ସୌରାଷ୍ଟ୍ର)
(ତା ଶୋଭନ ଲେପନେ—ପ୍ରଭୃ)

ଶୁଣହେ ସାଧୁଜନେ
ଶ୍ରୀହରି ଲୀଳାକୁ ସାବଧାନେ । ପଦ

ଯେଉଁ କଥା ଶ୍ରବଣ ମାର୍ଗରେ ପ୍ରବେଶ ହେବା କ୍ଷଣ
ହୁଅଇ କ୍ଷୟ ପାପନିଚୟ
ତୃଣ ଯଥା ଦହନେ । ୧ ।

ଧନେ ଧାତା-ନନ୍ଦନ ଶ୍ରୀହରି ଗୁଣ କରୁ ଗାୟନ
ନଳକୂବର ଶାପୁଁ ଉଦ୍ଧାର
ପ୍ରସଙ୍ଗ ଭାବ ମନେ । ୨ ।

ତା ଭାବେ ହୋଇ ବଶ ଅଳକାପୁରେ ହେଲେ ପ୍ରବେଶ
ଦେଖି କନ୍ନର ରାଜକୁମର
ପ୍ରମୋଦ ଲଭି ମନେ । ୩ ।

ଅର୍ଘ୍ୟାଦ ଉପଚାର ପୂଜନ କଲେ ମୁନି ପଯ଼ୂର
ବସାଇ ଭକ୍ତ ଭାବେ ଝଂଠତ
ମଣିମୟ ଆସନେ । ୪ ।

ଭକ୍ତ ଦେଖି ତାହାର ନାରଦ ମୁନି କାଇ ଶରୀର
ସୁପ୍ରେମ ଭାବ କଲେ ପ୍ରକାଶ
ହରଷିତ ବଦନେ । ୫ ।

ଚକ୍ରିଟି ଧରାଧବ କଶୋରଚନ୍ଦ୍ର ରାଜେନ୍ଦ୍ର ଦେବ
ଭଣିଲେ ମନ ମଜ୍ଜାଇ ଘନ
ବରଣ ରୂପ ଧ୍ୟାନେ । ୬ ।

ନାରଦ—

(ପାଣ୍ଡୁରାଂଗା—ପ୍ରତି)

ରାଜ ରାଜ ନନ୍ଦନ ହେ
ଧନ୍ୟ ଅଟେ ତୁମ୍ଭ ପୁଣ୍ୟ । ପଦ ।

ଅଷ୍ଟାଙ୍ଗ ଆଦି ଯୋଗ ସମ୍ପାଦି
ଯୋଗୀ ନ ଲଭେ ଯା ଚରଣ୍ଦ୍ୱର୍ଣ୍ଣ । ୧ ।

ମୋ ଶାପ ଫଳେ ଏ ଚର୍ମଚକ୍ଷୋଲେ
ସେ ପ୍ରଭୁ ରୂପ କଲ ଦର୍ଶନ । ୨ ।

ଭଗତ ବଶ ହୋଇ ରାଜେଶ
କଲେ ଆଶ୍ଳେଷ ତୋ ଅପଘନ । ୩ ।

ସେ ଅଙ୍ଗ ସ୍ପର୍ଶ ଭାବ ମାନସ
ହେଲ ପ୍ରବେଶ ତୁମ୍ଭ ଭୁବନ । ୪ ।

ନଳକୂବର ଶୁଣି ଏ ଗିର
ଭାଷେ ରାଜେନ୍ଦ୍ର କଲେ କଥନ । ୫ ।

ନଳକୂବର—

(ରାଗ—କେଦାରଗୌଡ଼ା)

(ନବ କେଶର କାନନ ବଶେ କ ଶୋଭନ—ପ୍ରତି)

ଆଜ କ ପୂଣ୍ୟ ବାସର ଅଟଇ ମୋହର
ଦର୍ଶନ ହେଲ ହେ ଯାହା ତୁମ୍ଭ ଶ୍ରୀପୟର । ପଦ ।

ଭୁବନେ ତୁମ୍ଭ ସମାନେ ନଥିବେ ଯୋଗୀଶ୍ୱର
ହରତେ ତୁମ୍ଭ ମାନସ କୃଷ୍ଣରସେ ଜର୍ଜର । ୧ ।

ନିଖିଳ ହରି ଚରିତ ତୁମ୍ଭଙ୍କୁ ତ ଗୋଚର
ଶ୍ରବଣ କରାଇ ମୋର ପାପ କରାଅ ଦୂର । ୨ ।

ମୋ ସମ ପାପୀଜନଙ୍କୁ କରିବାକୁ ନିସ୍ତାର
ବିଧାତାସୁତ ରୂପରେ ହୋଇଅଛ ଅବତାର । ୩ ।

ବସନ୍ତ ରାସ ବିହାର ଲୀଳାକୁ କି ପ୍ରକାର
ଆରମ୍ଭ କଲେ ଶ୍ରୀକୃଷ୍ଣ କହ ମୋ ଆଗର । ୪ ।

ଶୁଣି ଋଷିଲେ ନାରଦ ହୋଇ ଆନନ୍ଦଭର
ଭଣିଲେ କିଶୋରଚନ୍ଦ୍ର ରାଜ ଅମରବର । ୫ ।

ନାରଦ—

(ରାଗ—ଚାନ୍ଦ୍ରବରାଳି)

(ପ୍ରିୟାବଦନ—ପ୍ରଭ୍ତ)

ନୃପ ନନ୍ଦନ
ଘେନ ଘେନ ମୋ ବଚନ । ପଦ ।

ବ୍ରଜେ ଶ୍ରୀହରିର ଲୀଳାକୁ ମୁଁ ସ୍ଥିର
କହିବାକୁ ନୁହେ ଭାଜନ । ୧ ।

ବୃନ୍ଦାଦେବୀଙ୍କର ଅନୁଗ୍ରହ ମୋର
ହୋଇଅଛି ଯାହା ଶ୍ରବଣ । ୨ ।

ତୋର ଭକ୍ତିବଳୁଁ କହିବି ସେସବୁ
ଶୁଣ ତୁ ହୋଇ ସାବଧାନ । ୩ ।

ଆଭୀରମଣ୍ଡଳେ କୃଷ୍ଣ କୁତୂହଳେ
କରନ୍ତି ସୁରଭି ପାଳନ । ୪ ।

କେତେ ଦିନ ଶେଷେ    ବୃନ୍ଦାବନ ଦେଶେ
ବସନ୍ତକାଳ ଆଗମନ । ୫ ।

ଜାଣି ରାଧା ପାଶେ    ବିଶାଖା ହରଷେ
ଜଣାକଲା ଯାଇ ବଦନ । ୬ ।

ଶ୍ରୀ କିଶୋରଚନ୍ଦ୍ର    ଦେବ ରାଜଇନ୍ଦ୍ର
କରେ କୃଷ୍ଣପାଦେ ବନ୍ଦନ । ୭ ।

ବିଶାଖା—

(ଗୋଷ୍ଠଚନ୍ଦ୍ରମା ଆସିବେ ଆଜ ଗୋ—ପ୍ରଭୃ)

ଆହା କି ଶୋଭା ଶ୍ରୀ ବୃନ୍ଦାବନରେ ଶୀବଧନ । ପଦ ।

ହେଲଣି ସଖୀଳ    ସେ ବିପିନ ସ୍ଥଳୀ
ସୁରଭି ଶୀର କେଳିସଦନରେ । ୧ ।

ମାର କର ଝଳି    ଶର କି ନଆଳି
ହେଲେଣି କେତେ ବିକାଶମାନରେ । ୨ ।

ମଦ ମତୁଆଳ    ହୋଇ ପିକକୁଳ
କଲେଣି ଉଚ୍ଚେ ପଞ୍ଚମଗାନରେ । ୩ ।

ମନ୍ଦଗନ୍ଧ ଶୀତ    ଗୁଣ ଯେନ ମିତ
ବହେ ଚନ୍ଦନ ବନ ପବନରେ । ୪ ।

ସୁମନାରେ କେଳି    କରି ଅଳିଆଳି
କଲେଣି ଲୋଭେ ମକରନ୍ଦ ପାନରେ । ୫ ।

ବିଜେ କର ଥରେ ଆଜ୍ଞା ଲୋକନରେ
ଥିଲେ ସଜନୀ ତୋ ଅବଧାନରେ । ୬ ।

ଶୁଣି ରାଧା ହସି ଲଳିତାକୁ ଭାଷି
କହେ ରାଜେନ୍ଦ୍ର ନୃପମଣ୍ଡନ ରେ, ଗାବଧନ । ୭ ।

ଶ୍ରୀରାଧା—

(ରାଗ—ହିନ୍ଦୁସ୍ଥାନୀ ଭୈରବୀ)

( କଦମ୍ବବନ ପ୍ରଦେଶେ—ପ୍ରଭୃ )

ଆସ ଗୋ ସଜନୀ ବନେ ଯିବା ବହନେ । ପଦ ।

ପଣ୍ଡିତା-ମଣ୍ଡଳ-ଶିଖା- ମଣି ଅଟେ ଗୋ ବିଶାଖା
କହିଲ ଯାହାଠି ଥିଲି ମୋ ମନେ । ୧ ।

କି ସୁଖ କହ ଗୋ ମୋତ- ଦଶନାମାନେ ଗୋ ନିତ
ବସି ଦିନ ହରିବାରେ ସଦନେ । ୨ ।

କହୁଥାଅ ଯେ ମୋ ଆଗେ ସେ ବନଶୋଭା ସରାଗେ
ଦେଖିଥିବା ଥରେ ହେଲେ ନୟନେ । ୩ ।

କେଳି କଉତୁକେ ମାତି ତୋଳି କୁସୁମ ଝଟତି
ଆସିବା ବୁଲି ଯମୁନା ପୁଳିନେ । ୪ ।

ହେଉଛି ମନ ଉଚ୍ଚାଟ ନକର କେହି ଆକଟ
ଏ କଥା ନପଡ଼ୁ ଜରଣ୍ଡ କାନେ । ୫ ।

ଶୁଣି ଲଳିତା ସେକାଳେ ସଖୀଙ୍କି ଡ଼ାକି ଘେନିଲେ
ଶ୍ରୀ କିଶୋରଚନ୍ଦ୍ର ରାଜେନ୍ଦ୍ର ଭଣେ । ୬ ।

ଲଳିତା—

(ହେଲ କ ଏହା—ପ୍ରତି)

କରିବେ ବନେ ସଜନୀ ଆମ୍ଭର
ସଜ ହୋଇ ସକଳେ ସାଜ ରାଜ ଉପର୍‌ବର । ପଦ ।

ଆଗ ବନ୍ଧୁର ପଥ ପରିଷ୍କାର
କର ଗୋ ନୋହିବାକୁ ବ୍ୟଥା କମଳ ପଦ୍ମର । ୧ ।

ପରିବାରିଏ ଚୂରି ସୁଧାକର
ସେବତିଦଳ ଭୂଲେ ବିଞ୍ଚି ଛୁଞ୍ଚି ପନିଅର । ୨ ।

ଧରୁ ସୁଦେବୀ ସରୁ ସୁଗନ୍ଧ ଧରି
ହେମ ଝରିରେ ଭରି ସୁବାସିତ ନୀର । ୩ ।

ଚମ୍ପକଲତା ବୀଣାରେ ରୁଚିର
ବସନ୍ତରାଗେ ଗୀତ ଗାୟନ କରୁ ଆଗର । ୪ ।

ଦେନ ତାମ୍ବୂଳ ରୁମୁରେ ସଖୀର
ରଙ୍ଗ ବିଶାଖା ଫୁଲପଖାକୁ ବୁଲାଉ ସଧୀର । ୫ ।

ଇନ୍ଦୁରେଖାକୁ ଦିଅ ଗୋ ଚାମର
ଶଶୀ ଠେକିବ ଜରି କର୍ପୀଦା ଆତପତ୍ରର । ୬ ।

ହୋଇ ପ୍ରମୋଦ ରସେ ଜରଜର
ଭଣିଲେ ଶ୍ରୀ କଶୋରଚନ୍ଦ୍ର ରାଜ ପୁରନ୍ଦର । ୭ ।

ଗାହାକ—

( ରାଗ—ସାବେରୀ )

( କ ଦଣ୍ଡ ବହ୍ନଳ ବଧୂ—ପ୍ରାନ୍ତ )

ଶୁଣ ହେ ନଳକୂବର ଏ ଚରିତ ମାନସ କରି ସ୍ଥିର । ପଦ ।

ଏଥୁ ଅନନ୍ତରେ ଅତି ହରଷରେ
ବାହାରିଲେ ବନେ ସଜନନକର । ୧ ।

ବଜପ୍ରେ ଶ୍ରୀମତୀ କରି ମନ୍ଦଗତି
ଲଳିତାର କରେ ଦେଇ କରଧାର । ୨ ।

ଜଗନ୍ନାପ୍ରେ ଅର୍ଥେ ସେ ବିପିନ ପଥେ
ମନମଥ ରଥ ଗୃଳ କ ସଧୀର । ୩ ।

ମଣିମା ମଣିମା ବୋଲି କେଉଁ ବାମା
ଗ୍ଳୁମୁରେ ଉଭାରି ମଣାଏଁ ପଦ୍ମର । ୪ ।

କେତେ ସହଚରୀ ମଙ୍ଗଳ ଉଚ୍ଚାରି
ରଙ୍ଗଦେବୀ ରଙ୍ଗେ ନାଚଇ ଆଗର । ୫ ।

ତହୁଁ କେତେ ବାଳୀ ଦେଉଲେ ହୁଳହୁଳି
କେହୁ କଉତୁକେ ଉଙ୍କଇ ଅଗୁର । ୬ ।

ଏପରି ସମ୍ଭବେ ନିତମ୍ବିନୀ ସବେ
ପ୍ରବେଶ ହେଲେ ସେ ବିପିନ ମଧର । ୭ ।

ଶ୍ରୀମତୀ ଏକାଳେ ସଖୀଙ୍କି ଭାଷିଲେ
ଭଣିଲେ ଏ ରସେ ରାଜ ପୁରନ୍ଦର । ୮ ।

ଶ୍ରୀରାଧା—

(ରାଗ—କେଦାରଗୌଡ଼ା)

(ଆସିବେ ଏହ୍ନକ୍ଷଣି ରେ ସହ୍ନି—ପ୍ରଭ୍ତ)

କେଡ଼େ ଶୋଭନ ଦିଶେ ଏ ବନ ମନ ନିଅଇ ମୋହି ରେ । ପଦ ।

| | | |
|---|---|---|
| କାମରାଜାର | ଛତ୍ରଆକାର | ନାଗକେଶର ସହ୍ନି ରେ । ୧ । |
| ଦେଖ କେତକୀ | କୁସୁମ ଏ କି | ହେମକବରି ସହ୍ନି ରେ । ୨ । |
| ଭୃଙ୍ଗ ଝଙ୍କାର | ପୁଷ୍ପଧନୁର | ଗୁଣ ଟଙ୍କାର ଏହ୍ନି ରେ । ୩। |
| ନିଆଳି କଳି | ସୁତୀକ୍ଷ୍ଣ ଝଳି | ଶରଭ୍ରମକୁ ଦେଇ ରେ । ୪ । |
| ହୋଇ ମରନ୍ଦ | ବିନ୍ଦୁରେ ସାନ୍ଦ୍ର | ଗନ୍ଧ ବନ୍ଧନ ହୋଇ ରେ । ୫ । |
| ଶ୍ରୀମତୀ ବାଣୀ | ବିଶାଖା ଶୁଣି | ଶ୍ରବଣେ ରାଜେନ୍ଦ୍ର କହି ରେ । ୬ । |

ବିଶାଖା—

(ଦଦ ଫୁଲ୍ ଗାଛେତେ—ପ୍ରଭ୍ତ)

ରେ କଞ୍ଜ ଖଞ୍ଜନାକ୍ଷି ଗୁଞ୍ଜରଗମନା । ପଦ ।

କୋକିଳ କଳବଚନା ଏ କୁଞ୍ଜପଟ୍ଟକୁ ଅନା
କେତେ କେତେ ଜାତିରେ ଫୁଟିଛି ସୁମନା । ୧ ।

ମଲ୍ଲିକା କୁସୁମେ ଅଳି କରୁଛି କରଙ୍ଗେ କେଳି
କଶୋଭ୍ର କଳା ଧଳା ପୀରତି ଘଟଣା ରେ । ୨ ।

ଧିକ ଏ କେତକୀ ସହ୍ନି କଣ୍ଟକ ଦୁର୍ଗରେ ରହ୍ନି
ମଧୁସୂଦନ ସଙ୍ଗ ନକରେ କାମନା ରେ । ୩ ।

ତୋ ଅଙ୍ଗୁଳି ଝୁଳା ଭଳି   ନୋହିବାରୁ ଚମ୍ପାକଳି
ଭୃଙ୍ଗ ପାଶୁ ପଳାଏ ବାଉ ତା ବାସନା ରେ । ୪ ।

ପରସ୍ପରେ ଏହିକାଳେ   ସଖିଏ ଛଳେ ଭାଷିଲେ
କହେ ରାଜଇନ୍ଦ୍ର ଦେବ ସେ ଭାବ ଭାବନା ରେ । ୫ ।

ସଖୀମାନେ—

(ରାଗ—ପାନ୍ତୁବରାଳି)

( ନିକୁଞ୍ଜବାସି ହେ ଗୁଞ୍ଜାବଳି—ପ୍ରଭୃତି )

ଦରସ୍ଫୁଟ କୁନ୍ଦ ମନ୍ଦହାସୀ
ବନଦ୍ୟ ମରନ୍ଦ ବନ୍ଦୁବୃନ୍ଦ ସାନ୍ଦ୍ର ବର ଅରବନ୍ଦ ବନ୍ଦ୍ୟ ବାସି । ପଦ ।

ବନ୍ଧୁଜୀବ ଧର   କାହିଁକି କଶୋର
ନଆଳି କୁଞ୍ଜକୁ ଯାଉ ହସି । ୧ ।

କରବରେ ପ୍ରୀତି   କଲୁ ତ ସୁଦନ୍ତୀ
ଯିବୁ କାହିଁ ମଲ ମଲ ଭାଷି । ୨ ।

ଧୂର୍ତ୍ତଗଣ ପାଶେ   ଛୁରଅନା ବଶେ
ଆସ ଚନ୍ଦ୍ରହାସ ପରକାଶି । ୩ ।

ହେଲୁ କି ସୁନ୍ଦର   ଦେବବଧୂବର
ଲୋଭେ ବରଜଲୁ ପାଶଦାସୀ । ୪ ।

ପଦଚନ୍ଦ୍ର ଗୃହିଁ   ମୋଦେ ରାଧା କହି
ରାଜେନ୍ଦ୍ର ଏ ଭାବେ ହେଲେ ତୋଷି । ୫ ।

ଶ୍ରୀରାଧା—

(ରାଗ—ଜଂଝୋଟି, ତାଳ—ଏକ)

(ଇକା ଗୃଲୁବାନ ପୋ ପୋ ମାନାବେ—ପ୍ରଭୃ)

ଏଣେ ଗୃହାଁ ଗୃହାଁ ପ୍ରିୟସହୀ ରେ । ପଦ ।

କାହାର ଏ ପସ୍ୱର ଚନ୍ଦ୍ର କ ରୁଚର
ହରଣେ ମୋ ମନ
ନୟନ-ଯୁଗ ହଏ ମୋହ୍ନ ରେ । ୧ ।

ମୂର୍ତ୍ତିବନ୍ତ କ ମାର ନବ ଅବତାର
ହେଲା ଯାହାକୁ
ହର ନୟନେ ଥିଲେ ଦହ୍ନ ରେ । ୨ ।

ଏ ପୁରୁଷକୁ ଯାହା ବହନ୍ତି ସୁଦେହା
କ ପୁଣ୍ୟଚୟ
ଅରଜ ଥିଲା ବ୍ରଜମହୀରେ । ୩ ।

ଧ୍ୱଜାଙ୍କୁଶ କଲସ ବଜ୍ରାର ସାରସ
ମୀନାତପତ୍ର
କମ୍ବୁ ଗୃପାଦ ଚହ୍ନେ ମୋହ୍ନ ରେ । ୪ ।

ବଲୋକବା ବେଳରୁ ସ୍ୱେଦ ପ୍ରବଳରୁ
ବେପଥୁ ବଶେ
ଅସ୍ଥିର ହେଲାନ ମୋ ଦେହ୍ନ ରେ । ୫ ।

ଶୁଣି ରାଧା ଭାରତୀ ଲଳିତା ସୁଚତୀ
ଭାଷିଲା ମୋଦେ
ରାଜେନ୍ଦ୍ର ଦେବ ରସେ କହ୍ନ ରେ । ୬ ।

ଲଳିତା—

(ରାଗ—କେଦାର, ତାଳ—ଆଦି)

(କୋମଳାଙ୍ଗି ତାଳାକୁ ନାଦବ୍ର—ପ୍ରଭ)

ପାରପାକ୍ଷୀ ନଳକୁନ୍ତଳା ରେ ଶିର୍ଷ ପୁଷ୍ପ ସୁକୋମଳା
ସଙ୍ଗିନରେ ବ୍ରଜ- ରାଜ ପୁରଙ୍ଗଣ
ବ୍ୟୋମ ମଣ୍ଡନ ଶ୍ୟାମଳ ଶଶି ଏହି । ପଦ ।

କୁନ୍ଦନ ନନ୍ଦନ ପୀତପଟୋଦ୍ଭଟ
ନାଟ୍ୟ ଲମ୍ପଟରେ ମେଦୁର ମୁଦିର
ପୁଞ୍ଜକାନ୍ତ କାମ କୋଟି ନିର୍ଜିତ
ସୁନ୍ଦର ବଗ୍ରହ ବାରିଜ ନିଭ ମୁଖ । ୧ ।

ବଲଗୀ ବଲ୍ଲଗୀ ପଲ୍ଲବ କାରକ
ଦକ୍ଷିଣାନିଳରେ ମୋହନ ମୁରଲୀ
ନାଦାମୃତ ବିମୋହିତ ସାଧବୀ-
ମଣ୍ଡଳୀ କାଳୀୟ କୁଣ୍ଡଳୀ ମଦ ହର । ୨ ।

ମଞ୍ଜୁଳ ମୟୂର ଚନ୍ଦ୍ରକ ନିର୍ମିତ
ଚୂଳ ଶୋଭି ଶିର ପ୍ରସ୍ଫୁଟ ନୀରଜ-
ପତନେତ୍ର ଦିବ୍ୟ ମକରାକୃତି
କୁଣ୍ଡଳ ଖେଳନ ମଣ୍ଡିତ ଗଣ୍ଡବର । ୩ ।

ସଙ୍ଗିନୀ ଭାରତୀ ଶୁଣି ସେ ଶ୍ରୀମତୀ
ମୋଦ ମାନସରେ ଭାଷିଲେ ତାହାକୁ
ଶ୍ରୀ କିଶୋରଚନ୍ଦ୍ର ରାଜ-ବାସବ
ଭୂପତି ମଉଳ ମଣ୍ଡନ ଭଣେ ରସେ । ୪ ।

ରାଧା—

(ରାଗ—ଶଙ୍କରାଭରଣ, ତାଳ—ଅ.ଦ)

( ନ ଜାଣୁକ ଛନ୍ଦ—ପ୍ରଭ )

ସଜନୀ ଶୁଣ ମୋର ବାଣୀ । ପଦ ।

ଆରେ କେଳିକୁଶଳା ଯାଅନା କରି ହେଳା
ପୁରକୁ ଏକ୍ଷଣି । ୧ ।

ଏ ପଦ୍ମର ଯାହାର ସୁରୂପକୁ ତାହାର
ଶବ୍ଦରେ ନିର୍ମାଣି । ୨ ।

ଆଣିବୁ ବେଗେ ପାଶେ ରହିଲ ମୋ ମାନସେ
ଏହି ଶୋଭ ଠାଣି । ୩ ।

ଯେ ରୂପେ ମୋହି ନୋହି ଲେଖିବୁ ଧୈର୍ଯ୍ୟ ବହି
ଥପୁ କରି ପାଣି । ୪ ।

ତଥା ଗଲା ତା ଶୁଣି କିଶୋର-ନାଗମଣି
ରାଜଇନ୍ଦ୍ର ଭଣି । ୫ ।

ଗାହାକ—

( ରାଗ—ଶଙ୍କରାଭରଣ, ତାଳ—ରୂପ୍ )

(ବ୍ରଜ-ସୁନ୍ଦରୀ-ମଣି—ପ୍ରଭ)

ନଳକୂବର ହେନ ମାନସ କରି ସୁସ୍ଥିର । ପଦ ।

ଏଥୁ ଅନ୍ତେ ଶ୍ରୀମତୀ ହୋଇ ଉଚ୍ଛନ୍ନମତି
ବଚିନରୁ ଝଟତି ବାହୁଡ଼ିଲେ ନିଜପୁର । ୧ ।

ଯେତେଣେ ଦେଖିଲେ ତେତେଣେ ସେହି ଶୋଭା କ୍ଷଣେ
ଦିଶଇ ଅନୁକ୍ଷଣେ ବଳେ ରାଧା ଆଗର । ୨ ।

ପଲକକୁ ପଲକ ଜାତ ହୁଏ ପୁଲକ
ପୂରି ଶ୍ରୀଅଙ୍ଗପାକ କମ୍ପ ବହେ ଶରୀର । ୩ ।

ଯାଇ ସେଠାରୁ ଅଭି- ନବ ବସ୍ତୁରୀ ଲୋଭି
ହୋଇ ଚନ୍ଦ୍ରେ ବଳଭି ମଣ୍ଡିଲେ ସେ ସୁନ୍ଦର । ୪ ।

ଏ ରୀତି ବୃନ୍ଦୀଁକର ସକଳ ସହଚରୀ
ଆନନ୍ଦେ ପରସ୍ପର ହୋଇଲେ ପରସ୍ପର । ୫ ।

ଚମତ୍କ ଦେଖାଇ ଯେକାଳେ ଚମ୍ପା କହି
ଭବେ ସେ ଭାବ ଧ୍ୟାୟି ରାଜ ଅମରବର । ୬ ।

ଚମ୍ପା—

(ରାଗ—କଲ୍ୟାଣୀ, ତାଳ—ଏକ)

( ଆଜ ଶ୍ରୀହରି ରାଧାର—ପ୍ରତି )

ବୃନ୍ଦାବନରେ ତମାଳକେଶି ଏହି ଗୋ ବ୍ରଜବଳାସୀ
ଗୋପନୃପତି ମନ୍ଦିର ମଣ୍ଡନ ଶ୍ୟାମଳ ଶଶି । ପଦ ।

କଟିରେ ପୀତ ଦୁକୂଳ ଦିଶଇ ଅତି ମଞ୍ଜୁଳ
ନବୀନ ଘନକୋଳେ କି ଚପଳା ଅଛି ପ୍ରକାଶି । ୧ ।

ଚନ୍ଦ୍ରକ ମୁକୁଟ ଶିରେ ଜନ-ମନ-ନେତ୍ର ହରେ
କି ଶୋଭା ପାଉଛି ବାମ କରରେ ମୋହନବଂଶୀ । ୨ ।

କର୍ଣ୍ଣେ ମକରକୁଣ୍ଡଳ ମଣ୍ଡୁଛି ଗଣ୍ଡଯୁଗଳ
ଲଲାଟେ କସ୍ତୂରୀ ଚିତା ସର୍ଷାଧୃତ ଦିଏ ନାଶି । ୩ ।

ନନ୍ଦୁଚ୍ଛ ଶ୍ରୀଅଙ୍ଗ କାନ୍ତି ଇନ୍ଦ୍ରନୀଳମଣି ଦ୍ୟୁତି
କୋହ୍ନବ କେଉଁ ଯୁବତୀ ଏହା ପଦତଳେ ଦାସୀ । ୪ ।

ଏହି ଆଭୀର ନଗରୀ ନିଖିଳ ନବନାଗରୀ
ନୟନଆନନ୍ଦଶିରୀ ଯଶୋବନ୍ତୀ ପୁଣ୍ୟରାଶି । ୫ ।

ବଲୋକ ରାଧା ଏକାଳେ ଲଳିତାଙ୍କୁ ଡାକ ବୋଲେ
କଣେରିଚନ୍ଦ୍ର ରାଜେନ୍ଦ୍ର ଭଣେ ଶ୍ରୀକୃଷ୍ଣ ମନାସି । ୬ ।

ରାଧା—

(ରାଗ—ସିନ୍ଧୁଖମାଚ, ତାଳ—ଆଦ)

(ଶାମାଳ ସୁରତସ୍ନା ମେର—ପ୍ରଭ)

ଆହା କି ଶ୍ରୀଅଙ୍ଗ ମାଧୁରୀ ଚିତ୍ତ ନିଏ ହରି
ନବ ଚମ୍ପକ ଭୁବନ
ଲୋକଲୋଚନ ଶିରୀ । ପଦ ।

ପଦ୍ମବସାଧାର ଶୁଦ୍ଧ ଶୋଭାକର
ମୂର୍ତ୍ତି ରୂହିଁ ଧୈର୍ଯ୍ୟ ଧର
ପାରେ କି କେଉଁ ନାରୀ । ୧ ।

ମର୍ମ ଝୁରଲି ଶ୍ରୀକରେ ମୁରଲି
ପ୍ରପନ୍ନ-ଜନ-ପାବନ
ଭବ-କଳୁଷ-ହାରୀ । ୨ ।

ଶୃଙ୍ଗାର ଶାନ୍ତ କୃପା କରୁଣତି
ଏକାଧାରେ ଜନ୍ମିଛନ୍ତ
ମର୍ତ୍ତ୍ୟହିତ ବପୁର । ୩ ।

ବିଶ୍ୱବରେଣ୍ୟ ଅପୂର୍ବ ଲାବଣ୍ୟ
ଛବି ଶୁଣିବା ମାତ୍ରେ
ମୋ ପ୍ରାଣ ହୋଇଲା ଭୋର । ୪ ।

ଧନ୍ୟ ତା ଜନ୍ମ ପୂର୍ବକୃତ ଧର୍ମ
ବଞ୍ଛାଲାଲ୍ଲତ ଏ ପଦେ
ସେବିବା କିଶୋର । ୫ ।

ଶୁଣି ଏ ବାଣୀ ଲଳିତା ସେକ୍ଷଣି
ଗାଇଲା ଭଣେ କିଶୋର-
ଚନ୍ଦ୍ର ରାଜ ବଳାର । ୬ ।

ଲଳିତା—

(ରାଗ—ବେହାଗ ବା ହିନ୍ଦୁସ୍ଥାନୀ ଭୈରବୀ, ତାଳ—ଆଦି)

(ବାତାବେ ସାଖି କୋନ୍ ଗାଲମେ ଗାୟୁ। ଶ୍ୟାମ—ଦ୍ରୁତ)

ସଜନୀ ଏହି ବ୍ରଜ ନବ ଘନ ଶ୍ୟାମ । ପଦ ।

ନନ୍ଦ-ମହିଳା ନୟନ ପିତୁଳା
ରସିକ ଶିର ଲଲାମ । ୧ ।

ସତେ ଗୋ ମିତ ନିଖିଳ ଜଗତ
ଶୋଭାବଳୀ କେଳିଧାମ । ୨ ।

ମଙ୍ଗଳାଧାର ସର୍ବ ଶୁଭାକାର
ସୁଗୁଣଗଣାଭିରାମ । ୩ ।

ତ୍ରିଭଙ୍ଗୀ ଠାଣି ବିଲୋକିବା କ୍ଷଣି
ଦେହେ ଜାତ ହୁଏ ଘାମ । ୪ ।

ଶୋଭ ପଣକୁ ଶ୍ରୀପଦ କୋଣକୁ
ସମ ନୁହେ କୋଟି କାମ । ୫ ।
କଶୋରଚନ୍ଦ୍ର ରଜନ ମହେନ୍ଦ୍ର
ସୁନ୍ଦରେ ନୃତ୍ୟ ଏହା ନାମ । ୬ ।

ଗାହାକ—

(ରାଗ—ପୀଲୁ, ତାଳ—ଏକ)

( ସୁର ହର ଶିବ ଶଙ୍କର ଭୋ—ପ୍ରଭୃ )

ଧନପତ ପ୍ରିୟ ନନ୍ଦନ ହେ ଶୁଣ ସାବଧାନେ । ପଦ ।
ରାଧା-ମାନସ ଭାବ ଜାଣି ଚାଣେ ନଜ ସଜମାଶ୍ରେଣୀ
ରମ୍ପିଲେ ପ୍ରସଙ୍ଗ ଆଣି ହର ଗୁଣ ଗାନେ । ୧ ।
ଦୃଷ୍ଟିଗୋଚର ହେବ ଭାଳ ରାଧାର ବହାର ଅଟାଳ
ମଧ୍ୟେ ଚକ୍ରପଟକୁ ଆଳ ରଖିଲେ ଯତନେ । ୨ ।
ଏଣେ ଶ୍ରୀହର ସଖା ସଙ୍ଗେ ପ୍ରବେଶି ବୃନ୍ଦାବନ ଭାଗେ
ଭାଡିଲେ ସୁଦାମ ସରାଗେ ରାଜଇନ୍ଦ୍ର ଭଣେ । ୩ ।

ସୁଦାମ—

(ରାଗ—ଫରଜୁ, ତାଳ—ଏକ)

( ନନୁ ବନା ପାରମା ଗାଡ—ପ୍ରଭୃ )

ଏତେ ଦନେ ବସନ୍ତ ଋତୁ ହୋଇଲା । ପଦ ।
ଏ ପବତ୍ର ବୃନ୍ଦାବନ ହୋଇ କ ଶୋଭନ
ଦର୍ଶକଗଣ ମାନସ ମୋହଲା । ୧ ।

ମଲ୍ଲୀ ମାଧବୀ ସେବତୀ ବଲ୍ଲୀ ପୁଷ୍ପବତୀ
ହେଲେକ ଅଳି କେଳିକ ବହିଲ । ୨ ।

ସାରବ ବରଙ୍ଗିକୁଳ ମନ୍ମଥ କେବଳ
ସୁହୃଦର ସହାୟକୁ ପାଇଲ । ୩ ।

ଚନ୍ଦନ ସୁବାସ ଧରି ମଳୟ ଶିଖରୀ
ତଟରୁ ମନ୍ଦ ସମୀର ବହିଲ । ୪ ।

କରି କବଳ ବକୁଳ ମୁକୁଳ କୋକିଳ
ମୋଦରେ ପଞ୍ଚମ ସ୍ୱରେ ଗାଇଲ । ୫ ।

ସୁଦାମାର ବାଣୀ ଶୁଣି ମୋଦେ କୃଷ୍ଣ ଭଣି
ସେ ବନ୍ଧୁପଦ ରାଜେନ୍ଦ୍ର ଧାଇଲ । ୬ ।

କୃଷ୍ଣ—

(ରାଗ—କେଦାରଗୌଡ଼ା, ତାଳ—ରୂପକ)

( ନବ ବଂଶୀର—ପ୍ରଭ )

ନବ ବସନ୍ତାଗମନେ
କି ମୋଦ ନନ୍ଦଏ ମନେ । ପଦ ।

ପ୍ରସରୁ ଦକ୍ଷିଣାନଳ ପଲ୍ଲବିତ ପାଦପକୁଳ
ବେଣୁ ବିଯୋଗିମା ତୁଳ
ଦଶେ ପଞ୍ଚାଳ ବହ୍ନିନେ । ୧ ।

ବାରବନିତାଙ୍କ ପରି ପତ୍ର ପୁଷ୍ପେ ସର୍ବ ବଲ୍ଲରୀ
ନବ ନବ ବେଶ ଧରି
ନାଚନ୍ତି ମନ୍ଦ ସ୍ପର୍ଶନେ । ୨ ।

ନ୍ୟାୟପର ନରବର  ନ୍ୟାୟ କୀର୍ତ୍ତି ଖ୍ୟାତ କାମର
ବୃଦ୍ଧି କରିଲ ବାସର
ସାଧବୀରେନ୍ଦ୍ର ସମାନେ । ୩ ।

ଦରିଦ୍ର କୁହୂମାସକ୍ତ  ମାନବର ଆୟୁଷବତ
କ୍ରମେ କ୍ରମେ କ୍ଷୟପ୍ରାପ୍ତ
ହେବ ତୁଷାର କଦାନେ । ୪ ।

ସୁର ଗୁଲ୍ମ ସ୍ତବକେ  ଭୃଙ୍ଗ ଶାଳଗ୍ରାମ ଉତ୍ସୁକେ
ସ୍ଥାପି ମରନ୍ଦାଭିଷେକେ
ମଜ୍ଜନ୍ତି ଶନ୍ତ୍ରୁ ସାଧନେ । ୫ ।

ପିକ ଚୂତ ସ୍ତବକରେ  ଖେଳି ମନ୍ମଥ ସ୍ତବ କରେ
ରାଜେନ୍ଦ୍ର ଅହର୍ନିଶରେ
ରସିଲେ ଶ୍ରୀକୃଷ୍ଣ ଧ୍ୟାନେ । ୬ ।

ମଧୁମଙ୍ଗଳ—

(ରାଗ—ହିନ୍ଦୁସ୍ଥାନୀ ଭୈରବୀ, ତାଳ—ଏକ)

(ଏ ସମ୍ପ୍ରେ ମଧୁକଣ୍ଠ—ପ୍ରତି)

ହେ ନୂଆ କଳାବତୀ ହୃଦୟବିହାରି । ପଦ ।

ଏ ଦିଗେ ନୀଳବରନ  ଦିଅ ନୟନ
ଯେବେ ତୁମ୍ଭ ଭାଗ୍ୟତରୁ ଆସିଲ ଅଙ୍କୁର ।୧।

ଅଛନ୍ତି କେତେକ ଲତା  ହୋଇ ଖଣ୍ଡିତା
ଛିଣ୍ଡାଇ ନେଇଛନ୍ତି କୋମଳ ମଞ୍ଜରୀ ।୨।

କରିବାକୁ ବୃନ୍ଦାବନ  ଶୋଭା ଲୋକନ
ଆସିଥିବେ କେତେ ସତେ ବ୍ରଜନାଗରୀ ।୩।

ସେବତି ଚମ୍ପା ନଆଳି କୁସୁମ ତୋଳି
ନେଇଛନ୍ତି କରିବାକୁ ମଣ୍ଡନ କବରୀ ।୩।
ଏ କାହା ପଯ୍ୟର ଚନ୍ଦ୍ର ଚନ୍ଦ୍ର ମୋହନ
ଚନ୍ଦ୍ରବଂଶ ଚନ୍ଦ୍ରପୋରେ ହରେ କି ମାଧୁରୀ ।୪।
ପୁଚ୍ଛିଲେ କୃଷ୍ଣ ବିଲୋକି ବୃନ୍ଦାକୁ ଡ଼ାକି
ଭଣେ କିଶୋରଚନ୍ଦ୍ର ଭୂପତି ବଳାରି ।୬।

କୃଷ୍ଣ—

(ରାଗ—ଖମାଚ, ତାଳ—ମିଶ୍ରରୂପ୍)

(ଓ ରମଣୀ ମଣି—ପ୍ରଭି)

ରେ ଶରଦ-ପୂର୍ଣ୍ଣି-ଚନ୍ଦ୍ରମା-ମୁଖି
ଚନ୍ଦ୍ରମାମୁଖି କହ ମୃଗାକ୍ଷି । ପଦ ।
ଆସି ଗୋ ଥିଲି କେଉଁ ମହଲା
ଆଜ ବୃନ୍ଦାବନ ଶୋଭା ପରଖି । ୧ ।
ଯାଉଛୁ ଜଣା ସେ ବିଚକ୍ଷଣା
ଗହଣରେ ଥିବେ କେତୋଟି ସଖୀ । ୨ ।
କି କାନ୍ତି-କୁଳ- ଦେବୀ ଏ ସ୍ଥଳ
ମଣ୍ଡି ଥିଲି ମୋଦେ ଅଛୁ କି ଦେଖି । ୩ ।
ପମ୍ବର ଚନ୍ଦ୍ର ଗୃହଁ ନୟନ
ସାର୍ଥ ହୋଇଗଲି ତହିଁରେ ଲଖି । ୪ ।
କାହା କୁମାରୀ ଲାବଣ୍ୟଝରୀ
ବ୍ରଜରେ ଧାତା କି ଅଛୁ ଗୋ ରଖି । ୫ ।
ଶୁଣି ସେକାଳେ ବୃନ୍ଦା ଭାଷିଲେ
ରସେ ଭସେ ରଜା ହଜାରଆଁଖି । ୬ ।

ବୃନ୍ଦା—

(ରାଗ—ଖମାଚ, ତାଳ—ଆଦ୍ଧ)

(ଧାର ନାହ୍ନୁର ନାମାନା—ପ୍ରଭ)

ଆହେ ଶ୍ୟାମଳ ଚନ୍ଦ୍ରମା, ସୁଗୁଣଧାମା
ଅଟଇ ସେ ବୃଷଭାନୁ ରାଜାଙ୍କ ପ୍ରିୟଜେମା । ପଦ ।

ସଜନୀଙ୍କ ମେଳେ ବହାର କୁତୂହଳେ
ଆସିଥିଲା ଦେଖି ଏ ବନ ସୁଷମା । ୧ ।

ମୂର୍ତ୍ତିମନ୍ତ କରି ତାହାକୁ କୁଣଧାରୀ
ଘଡ଼ୁଛି ତିନ ଲୋକ ଶୋଭା କରି ଜମା । ୨ ।

ଖୋଜଲେ ଯତନେ ତାର ରୂପ ସମାନେ
ନାହିଁଟେ ଚଉଦ୍ଦଶ ପୁରରେ ଉପମା । ୩ ।

ତା ପଦ ଅଙ୍ଗୁଳି ଅଗ୍ରକୁ ହେଲେ ଭଲି
ନୋହିବେ ତ ଶୋଭାରେ ଶଚୀ ଉମା ରମା । ୪ ।

ଶ୍ରୀହରି ନସକାଳେ ଶୁଣି ସଖୀଙ୍କୁ ବୋଲେ
ଭଣେ କିଶୋରଚନ୍ଦ୍ର ରଜନ ସୁଷମା । ୫ ।

କୃଷ୍ଣ—

(ରାଗ—କାଫୀ, ତାଳ—ଏକ)

(ବୃନ୍ଦାବନ କି ଅମନ୍ଦାନନ୍ଦ—ପ୍ରଭ)

ଶମ୍ଭାଗୋରୀ, ଅନୁକମ୍ପା ମୋରେ ହେବ କିପରି
ସେ ଉପାୟ କହ ହେ ମିତ ଶତ୍ରେ ଭଲେ ବସ୍ତୁରି । ପଦ ।

ବୃନ୍ଦା କହିଲା ବେଳରୁ ତା ଶ୍ରୀଅଙ୍ଗ ମାଧୁରୀ
ନାଚୁଛି ମୋ ନୟନରେ ସେ ସୁନ୍ଦରୀ ପୁରନ୍ଦରୀ । ୧ ।

ଦର୍ପକ ଦର୍ପଣ ଖଣ୍ଡ ଗଣ୍ଡସ୍ଥଳେ ମକରୀ
ଲେଖିବ ଏ କର ଏଡ଼େ ଭାଗ୍ୟ କି ଅଛି କରି । ୨ ।

ପ୍ରତୀଚୀ ବଧୂକୁ ଦେଖ ବହାପୂସ-ବହାଣୀ
ଅବଲମ୍ବନ କଲେନି ତ ଏବେ ଅସ୍ତ-ଶିଖର୍ଣ୍ଣ । ୩ ।

ଆଜ ରାଧା ପୁରମାର୍ଗେ ଯିବା ରଙ୍ଗେ ବହର
ହରୁଛି ସେ ମୋ ମନକୁ ହୃଦଦେଶୁଁ ଓଟାରି । ୪ ।

ଭାଷିଲେ ଏ କାଳେ ମଧୁମଙ୍ଗଳ ମୋଦେ ଦୂର
ଭଣିଲେ ନୃପ କିଶୋରଚନ୍ଦ୍ର ରାଜ-ବଳାରି । ୫ ।

ମଧୁମଙ୍ଗଳ—

(ରାଗ—ଧନାଶ୍ରୀ, ତାଳ—ଆଦି)

( କଣା ନୁହେ କାହାକୁ ସତେ—ପ୍ରତି )

ଉଦବେଗ କାହିଁକି ମନେ, ଆହେ ମୋହନ । ପଦ ।

ଚଳଦଳ ପତ୍ରକାର   କମ୍ପଇ ତୋ ଶରୀର
ରାଧା ବୋଲିବାର ନାମ   ପଡ଼ିଲା ମାତ୍ରକେ କାନେ ।୧।

ଥିଲେ ମୋ ହୃଦେ ମନ୍ତ୍ରୀ   କାମ ଜ ଶର ମନ୍ତ୍ରି
ବାନ୍ଧିବାକୁ ହେବ କ୍ଷମ   ତୁମ୍ଭଙ୍କୁ ବୀର ଗୁମାନେ ।୨।

ଏଣିକି ତ ସଙ୍କେତିତ   ତା ବେଶ ଲାଗି ନିତ
ଫୁଲ ନେବାକୁ ଆସିବେ   କହିବ ଏ ବୃନ୍ଦାବନେ ।୩।

ଏଥିରୁ ବଳିବ ଯେବେ ପ୍ରସଙ୍ଗର ପ୍ରସ୍ତାବେ
କହିବ ସମସ୍ତ ଜଗି ପୌର୍ଣ୍ଣମାସୀ ସନ୍ନିଧାନେ ।୩।

ଶୁଣି ଶ୍ରୀହରି ହରଷେ ସଖାମାନଙ୍କ ସଙ୍ଗେ
ବାହାରିଲେ ସଦନକୁ ରାଜଇନ୍ଦ୍ର ଦେବ ଭଣେ ।୪।

ଗାହାକ—

(ରାଗ—କେଦାରଗୌଡ଼ା, ତାଳ—ଆଡ଼)

(ନବକେଶର କାନନ—ପ୍ରଭ)

କନ୍ଦରକୁଳମଣ୍ଡନ ହୋଇ ସାବଧାନ
ଶ୍ରବଣମୁଖେ ଏ ରସ ପୀୟୂଷ କର ପାନ । ପଦ ।

ଏ ଅନ୍ତେ ଧେନୁମାନଙ୍କୁ ସେ ଘନବରନ
ଆଗେ ଚଳାଇ ପୁରକୁ କଲେ ମୋଦେ ଗମନ । ୧ ।

ମସ୍ତକେ ଚନ୍ଦ୍ରକଚୂଳ ହୁଅଇ ଚଳନ
ପଦୁର ନୂପୁର କରେ ଝୁମୁଝୁମୁ ନିସ୍ୱନ । ୨ ।

କେଉଁ ସଖା କରେ ପୁଷ୍ପ-ଭ୍ରମର ଚ୍ଛଳନ
ସିଂହନାଦ କରେ କେହୁ କେ କରଇ କୀର୍ତ୍ତନ । ୩ ।

ମୋହନ ମୁରଲୀ ଧୀରେ କରନ୍ତି ତ ବାଦନ
ହୋଇଛି ବଶ ଶ୍ରୀମଶ୍ୱଠାରେ ଆପଣା ମନ । ୪ ।

ଏକାଳେ ଗ୍ରହିଲେ କୁନ୍ଦଲତା କରି ଲେକନ
ଭଣିଲେ କିଶୋରଚନ୍ଦ୍ର ବ୍ରଜ ପାକଶାସନ । ୫ ।

କୁନ୍ଦଲତା—

(ରାଗ—ମୋହନା ବା ରେଗୁପ୍ତ, ତାଳ—ଆଦ)

( ଚନ୍ଦନ ହୃଦୟେ କର—ପ୍ରଭୃ )

ଆସ ଗୋ ବ୍ରଜନାଗରୀ
ପ୍ରମୋଦେ ଜର
ବନୁ ଆସନ୍ତ ଶ୍ରୀହରି ।
ଧବଳ ସୁରଭୀଗଣ ଚରଣର ରେଣୁକଣ
ପ୍ରାଚୀ ଅମ୍ବର ପ୍ରାଙ୍ଗଣ
ପ୍ରଦେଶେ ଗଲାନ ପୂରି । ପଦ ।

ସ୍ୱେଦ ପୂରନ୍ତି ଶ୍ରୀଅଙ୍ଗେ
ସଖାଙ୍କ ସଙ୍ଗେ
ହରର ତାଣ୍ଡବ ରଙ୍ଗେ ।
ନବୀନ ଘନ ବରନ ସୁମଧୁର ଅଚଘନ
ସୁବାମଣ୍ଡଳୀ ମଣ୍ଡନ
ହେଲେନ ଏ ପୂର ଲଗେ । ୧ ।

ଆସ ଗୋ କାଞ୍ଚନମାଳା
କାହିଁକ ହେଲା
କରୁ ଗୋ କେଳକୁଶଳା ।
ବୃଥାରେ ବସି ସଦନେ ମୁରଲୀ କାକଳି କାନେ
ପଡ଼ୁନାହିଁ କ ମୋହନେ
କର ଭୁ ଆସି ସଞ୍ଜଳା । ୨ ।

ଆସ ଗୋ ହେମମଞ୍ଜରୀ
ରଖ କବରୀ
ବନ୍ଧନ ମୃଗ ଚଉଁରୀ ।
ସଫଳ କର ନୟନ 	ଦେଖି ଏ ରୂପ ଲାବଣ୍ୟ
ଲୋଡ଼ିଲେ ଆଜ ସୁଦିନ
ନ ପାଇବୁଟି ଏପରି । ୩ ।

ମିଳନ୍ତେ ଗୋପୀ ସକଳ
ମଧୁମଙ୍ଗଳ
ବୋଲେକ କୃଷ୍ଣଙ୍କୁ ଭଣି ।
ଭଷିଲେ ନରେଶ ଶିର 	ମୁକୁଟ ରାଜା କିଶୋର
ଚନ୍ଦ୍ର ରାଜ ସୁରବର
ସେ ଶ୍ରୀକୃଷ୍ଣ ପଦ ଗୁଣି । ୪ ।

ମଧୁମଙ୍ଗଳ—

(ରାଗ—ସରଟ, ତାଳ—ଏକ)

(ରମୁନ ନାରୁଡ଼ାନେଡ଼ୁ—ପ୍ରତି)

ନବ ଛଇଲ ମଣ୍ଡନ
ମୋହନ
ଖେଳାଅ ଏ ଦିଗେ ଚଞ୍ଚଳ ନେତ୍ର-ଖଞ୍ଜନ । ପଦ ।

ମୋହିତ କରେ ଶ୍ରୁତି 	ବେନ ସରଭସ ଗତି
ବଣୁଁ ଯୁବତୀ ପଦ ମଞ୍ଜୁ ମଞ୍ଜୀର ସ୍ୱନ । ୧ ।
ନୀଳ ଉତ୍ପଳ ବୃଷ୍ଟି 	ସହୃଣ ବୋଲେଲ ଦୃଷ୍ଟି
ସହସ୍ର ଏକାବେଳକରେ ହୁଏ ପତନ । ୨ ।

ଥରକେ ବିମୋହନ ଶରକୋଟିକ ପ୍ରସୂନ-
ଧନୁରେ ସନ୍ଧି ମଦନ କରୁଛି କି ମୋଚନ । ୩ ।

ଏଣେ ମଣିମହଲ ମଣ୍ଡି କେତେ ସୁକୋମଳା
ରାଧାଙ୍କୁ ଘେନି ସଙ୍ଗେ କରନ୍ତି ବିଲୋକନ । ୪ ।

ମାଳଶାଢ଼ୀକି ଲାଗି ହୋଇଛନ୍ତି ଯେ କନକାଙ୍ଗୀ
ବୃଷଭାନୁନନ୍ଦନା ଅଟନ୍ତି ସେହି ଘେନ । ୫ ।

ରାଧାଙ୍କୁ ସଖୀ ବୋଲେ ହରଷଭରେ ସେକାଳେ
ଭଣେ କିଶୋରଚନ୍ଦ୍ର ରାଜ-ବଳଭେଦନ । ୬ ।

ଲଳିତା—

(ରାଗ—ଜଂଝୋଟି, ତାଳ—ଆଦି)

(ଇନ୍ଦୁମୁଖି ଶୁଣୁନେ—ପ୍ରଭୃତି)

ଆରେ ରସରଙ୍ଗିଣୀ ପ୍ରାଣ ସଙ୍ଗିନୀ
ଆସ ଆସ । ପଦ ।

ମଣ୍ଡି ମଣି ବାତାୟନ ଗୃହାଁ ବାରେ ମୋ ଧନୀ । ୧ ।
ଯାହା ଦରଶନ ଲାଗି ହୋଇଥିଲୁ ତୁ ଦୁଃଖିନୀ । ୨ ।
ସେହି ଏହି ପୁରମାର୍ଗେ ଯାଉଛନ୍ତି ଏକ୍ଷଣି । ୩ ।
ପଚାରିଲେକ ଗୃହପାଶେ ବ୍ରଜପୁର କାମିନୀ । ୪ ।
ହେଟି ଦେଖ ନଟବର ଶୁଣ ମୁରଲୀ ଧ୍ୱନି । ୫ ।
ରାଧିକାଙ୍କୁ ଗୃହାଁ କୃଷ୍ଣ ଭାବେ ରାଜେନ୍ଦ୍ର ଭଣି । ୬ ।

କୃଷ୍ଣ—

(ରାଗ—ସେନ୍ଧବୀ, ତାଳ—ଏକ)

(ନଦେଖି ତା ମୁଖ ସୁଧା ମୟୂଖ—ପ୍ରଭୃତି)

ସତେ କି ଏ ଅଟେ ମୋର ନୟନ ସମ୍ପତ୍ତି ହେ । ପଦ ।

ଉତ୍ତୁଙ୍ଗ ବଡ଼ଖି ପରେ    ସଖିଙ୍କର ମଧ୍ୟରେ
ହୁଅଇ ଚପଳାଲିଳା ପରି ଯେ ପ୍ରଶାନ୍ତି ଯେ । ୧ ।

ଶ୍ରୁତି ପରସରେ କେଳି    କରେ ଯା ନେତ୍ର ଯୁଗଳି
ଶିଖେ କି ନଟ ଲମ୍ପଟ ଖଞ୍ଜରୀଟ ଗତି ହେ । ୨ ।

ଆହା କି ମୁଖ ସୁଷମା    କୋଟିଏ ପୂର୍ଣ୍ଣ ଚନ୍ଦ୍ରମା
ସମ ନୁହେ ତ ହାରିବେ ଉମା ରମା ରତି ହେ । ୩ ।

ନିଖିଳ ଶୋଭାକୁ ଆଣି    ଧାତା ଅଛି କି ନିର୍ମାଣି
ଶୃଙ୍ଗାର କରୁଣାରସେ ନିଶ୍ଚେ ଏ ମୂରତି ହେ । ୪ ।

ସଖୀକି ରାଧା ଏକାଳେ    କୃଷ୍ଣଙ୍କୁ ଦେଖାଇ ବୋଲେ
ଭଣିଲେ କିଶୋରଚନ୍ଦ୍ର ରାଜ ସୁରପତି ହେ । ୫ ।

ରାଧା—

(ରାଗ—ଖରହରପ୍ରିୟା, ତାଳ—ରୂପକ)

(କରିବୁକି ଉପାୟ ଆହା ବାନ୍ଧବୀ ଏବେ—ପ୍ରଭୃତି)

କିସ ଏ ଚମତ୍କାର ଦିଶଇ ପ୍ରିୟ ସଖୀ
ଗୃହୀବା ମାନେ ଶତ୍ରେ ଭ୍ରମ ଜାତ କରଇ । ପଦ ।

ଦଳାଅଞ୍ଜନ ଗୋଳା ଜଳେ ଏବେ କି ବହ୍ନି
ଚତୁର୍ଦ୍ଦଶ ଭୁବନ ପ୍ରଳୟକୁ ରଚଇ । ୧ ।

ଯହିଁ ଗଗନ ତଳ ଘନ ବନା ଶୋଭଇ
ବାସବ-ମଣିଗଣ ବୃଷ୍ଟି କେହ୍ନ ହୁଅଇ । ୨ ।
କାହୁଁ ଗାଢ଼ ତିମିରପୁଞ୍ଜ ପ୍ରସ୍ରୋତ ବହି
ଲୋଚନଯୁଗାଲୋକ ମାର୍ଗକୁ-ଆଚ୍ଛାଦଇ । ୩ ।
ଶୁଣି ଶ୍ରୀମତୀ ବାଣୀ ଲଳିତା ମୋଦ ବହି
ଭଣେ କିଶୋରଚନ୍ଦ୍ର କୃଷ୍ଣ ପଦେ ନମଇ । ୪ ।

ଲଳିତା—

(ରାଗ—ଜଂଝୋଟି, ତାଳ—ରୂପକ)

(ସୁନ୍ଦରୀ-କୁନ୍ଦବୃନ୍ଦ-ବନ୍ଦ୍ୟ-ମନ୍ଦହାସି—ପ୍ରଭୃତି)

ସଙ୍ଗିନୀ ମଦମତ୍ତ ପିକ ମଞ୍ଜୁବାଣୀ ରେ । ପଦ ।

ଜନମନ ବିମୋହନ ଏ ମୋହନ ଠାଣିରେ ।
ମୋହ୍ନ ହୋଇ ନ ଯା ନାଗରବରମଥାମଣି ରେ । ୧ ।

ମୋ କଣ୍ଠରେ ଭୁ ନବଢ଼େ ଭଡ଼ ରଖ ପାଣି ରେ ।
ସମ୍ଭାଳ ରହ ଧଇର୍ଯ୍ୟ ଧର ସୁମାଲବେଣି ରେ । ୨ ।

ଦେଖ କି ମଧୁର କୃପା କଟାକ୍ଷ ଗୃହାଣି ରେ ।
ଚକିତେ ରହିଁଲ୍ ପର ଗଣବଣା ଏଣୀ ରେ । ୩ ।

ପୀତ ଚିର ଫେର ମାର ବିଜୟୁ ନିସାଣି ରେ ।
ବାସବ-ରତନ-କାନ୍ତ ଧୃତ ନିଏ ଟାଣି ରେ । ୪ ।

ଜଟିଳା ଆସିବା ଜାଣି ଗଲେ ସେ ତରୁଣୀ ରେ ।
ଭଣେ ହରି ଦୁଃଖେ ଭଣେ ରାଜ-ବଜ୍ରପାଣି ରେ । ୫ ।

କୃଷ୍ଣ—

(ରାଗ—ମୁଖାରି, ତାଳ—ରୂପ୍)

(ତା ମୁଖ ସୁଧା ମୟୂଖ ଭଲେ ନାହିଁ—ପ୍ରଭୃତି)

ଆହା କି ଦାରୁଣ ବିଧି ହରି ନେଲା ମୋ ସୁଖ
ନିମିଷେ ଦେଖି ନଥିଲି ତା ନଳିନ ଶ୍ରୀମୁଖ । ପଦ ।

ଡୋଳା ଖେଳନ ଲୀଳାରେ ମଜ୍ଜିଥିଲା ମୋ ମନ
ଆନ ଶ୍ରୀଅଙ୍ଗ ସୀମାରେ ଖେଳିନାହିଁ ନୟନ । ୧ ।

ସଖୀ ଅଂଶେ ଦେଇ କରି ସୁମଧୁର ଭାରତୀ
ଗେଲାଇ ହୋଇ କହିବା ଶୁଣିନାହିଁ ମୋ ଶ୍ରୁତି । ୨ ।

ଥିଲେ ହେଁ ଅନେକ ଏହି ବ୍ରଜେ ଗୋପଯୁବତୀ
ତା ବିନା ଧରି ନପାରେ ଦଣ୍ଡେ ହେଲେ ମୁଁ ଧୃତି ।୩।

ଏପରି ଦୁଃଖେ ସ୍ୱପୁର ଦ୍ୱାରେ ହେଉଁ ପ୍ରବେଶ
ଭାଷିଲେ ଯଶୋଦା ହର୍ଷେ ଭଣେ ରାଜ ସୁରେଶ । ୪ ।

ଯଶୋଦା—

( ରାଗ—ଖମାଚ, ତାଳ—ଆଦି )

( ଦଶଇ କି ଶୋଭନ—ପ୍ରଭୃତି )

ଆସ ଆସ ମୋ ଧନ ଦେଇବି ଚୁମ୍ବନ
ଅଙ୍କରେ ବସ ମୋ ପ୍ରାଣସଙ୍ଗୀଳ ରଙ୍କରତନ । ପଦ ।

ଖେଳ କଉତୁକେ ମାତି ଏପରି ବିଳମ୍ବ ନିତି
କଲେ ତୁ ନୀଳ ମୂରତି ଯିବ ଜୀବ ମୋ ଜୀବନ ।୧।

ବଚନ ଜଳୁ ତୁ ଗମନ କାହିଁ ନ ମିଶେ ମୋ ମନ
ତୋ ବଦେ ଦେଇ ନୟନ ଜଗି ବସିଛୁ ଅୟନ ।୨।

ଖରତରେ ନରତେ ବୁଲ ବୁଲ ତୁ ଘର ନ ବୋଲ
ଖେଳୁ ତୋ ଶ୍ରୀମୁଖ ଝୁଲ ବଶଇ ଅତ୍ତ ମଳନ ।୩।

ରାତ୍ତ ଦନ ପ୍ରତ୍ତ ଘଡ଼ି ବାଲକଙ୍କ ସଙ୍ଗେ ପଡ଼ି
ମଣହିଁ ସମସ୍ତ ହୃଡ଼ି ଶୁଖିଲନ ଅପଘନ ।୪।

କ ହେବ ଏ ଧନ ବାବୁ ତୁ ପିନା ଆମ୍ଭର ସବୁ
କାଳକ ଆଉ ନୟିବୁ ଦେବା ଜଗିବା ବେଚନ ।୫।

ଛକଟି ଅନାମାଶ୍ବର ଶ୍ରୀ କଶୋର କଳାକର
ରଜ ପୁଲମଜାବର କୃଷ୍ଣଙ୍କୁ କଲେ ବନ୍ଦନ ।୬।

ଗାହାକ—

(ରାଗ—କାଫୀ, ତାଳ—ଝୁଲ)

( ଓଲ ଏଇଲ ଅଲ—ପ୍ରତ୍ତ )

ଶୁଣ ମନ ସ୍ଥିର କର କନ୍ନର ବ୍ରଜ ନନ୍ଦନ । ପଦ ।

ଏ ଅନ୍ତେ ହର ମଣୋହ୍ନ ସାର ରାଧାରେ ମନ
ରଖି ଅଞ୍ଚାଳୀ ପରେ ହଂସୁଳ
ତଳପେ କଲେ ଶୟନ । ୧ ।

ନଦ୍ରା ନ ଆସେ ସକଳ ଦଶେ ରାଧା ଲାବଣ୍ୟ
ଦଶେ ନୟନେ ହୃଦୟ ବନେ
ପ୍ରବଳେ କାମ ଦହନ । ୨ ।

ମଧୁମଙ୍ଗଳ ଏହି ସକଳ ଚରିତମାନ
ସେହି କ୍ଷଣିରେ ପୌର୍ଣ୍ଣମାସୀରେ
କଲ୍ ଯାଇ ନିବେଦନ । ୩ ।

ଶୁଣି ହରଷେ ଜଟିଳା ପାଶେ ଯାଇ ସେ ପୌର୍ଣ୍ଣ-
ମାସୀ ପ୍ରତ୍ୟୁଷେ ଘୋଷିଲେ ରସେ
ଭଣେ ରାଜ ମଧୁବାନ । ୪ ।

ପୌର୍ଣ୍ଣମାସୀ—

( ରାଗ—ଝିଂଝୋଟି, ତାଳ—ଆଦ୍ଧ )

( ସେବାଲ ଯୁକ୍ତପେସେ—ପ୍ରନ୍ତ )

ଆସ ଗୋ ଆସ ବେଗେ ଜଟିଳେ ମୋ ପାଶକୁ । ପଦ ।

ବୃଷଭାନୁ ନନ୍ଦିନୀ ଗୋ ଗୋପିକୁଳମଣ୍ଡନୀ
ପରମ ସାଧ୍ୱୀ ଗୁଣେ ଏହା ସମାନ କାମିନୀ
ନଥିବ ବୋଲି ବ୍ରଜେ ଆଣ ତୁ ମାନସକୁ ।୧।

ଆଜ ଚୈତ୍ର ମାସର ଗୋ ଆଦ୍ୟ ରବି ବାସର
ଆରମ୍ଭି ଆଜଠାରୁ ହରଷେ ପୂଜୁ ଭାସ୍କର
ପ୍ରଭାତ ସ୍ନାନ ସାରି କରି ଉପବାସକୁ ।୨।

ଏ ବ୍ରତଯୋଗୁଁ ହେବ ଗୋ ତୋ ପୁତ୍ର କୋଟୀଶ୍ୱର
କୁନ୍ଦଲତାକୁ ପେଷି ଡ଼କାଅ ଗୋ ଦ୍ୱିଜବର
ଜଟିଳା ଭାବେ ହେଲେ ରାଜେନ୍ଦ୍ର ସନ୍ତୋଷକୁ ।୩।

ଜଟିଳା—

( ରାଗ—ନାଦନାମକ୍ରିୟା, ତାଳ—ଏକତାଳି )

(ସଖି ମୁରଲୀ କେ କହ ମତେ ସତେ—ପ୍ରଭୃତି)

ଆଗୋ କୁନ୍ଦଲତା ଭୁଞ୍ଜ ଏଥୁ ଯାଇ । ପଦ ।

ବେଦାଙ୍ଗ ଚତୁର ସୁଗୁଣ ଆକର
ଆଣ ଏକ ଦ୍ୱିଜବର । ୧ ।

ସପର୍ଯ୍ୟା ନମନ୍ତ୍ରେ ପରିବାର ହସ୍ତେ
ବେଦ୍ଧ କରାଅ ଭରତେ । ୨ ।

ଲଳିତାଦ୍ୟ କେତେ ଯାଅ ମୋଦ ଚିତ୍ତେ
ବଧୂକୁ ଘେନି ସଙ୍ଗତେ । ୩ ।

ପୂଜା ଉପହାର ଘେନାଇଁ ସତ୍ୱର
ଯିବ ମୁଁ ଯମୁନା ତୀର । ୪ ।

ଭଣିଲେ କିଶୋର ବଲ୍ଲବଶଙ୍କର
ରାଜ ଫୁଲମଞ୍ଜାବର । ୫ ।

ଗାହାକ—

(ରାଗ—ପାନ୍ତୁବରାଳି)

( ପ୍ରିୟା ବଦନ ହେରେଶେ କି ପ୍ରସନ୍ନ—ପ୍ରଭୃ )

ଶୁଣ ହେ ବୀର ମାନସ କରି ସୁସ୍ଥିର । ପଦ ।

ଏଥୁ ଅନନ୍ତରେ ଜଟିଳାର ଗିରେ
କୁନ୍ଦଲତା ଯାଇ ସତ୍ୱର । ୧ ।

ଅନ୍ତ ହରଷରେ ଶ୍ରୀହରି ପାଶରେ
କହିଲ ସକଳ ଖବର । ୨ ।

ଶୁଣି ହୃଷୀକେଶ ମହାଦେବ ବେଶ
ଧଇଲେ ହୋଇ ମୋଦଭର । ୩ ।

ଆସିଲେ ସରଙ୍ଗେ କୁନ୍ଦଲତା ସଙ୍ଗେ
ଧରି ମଧୁମଙ୍ଗଳର କର । ୪ ।

ଏକାଳେ ସଜନୀ ଶ୍ରୀମତୀଙ୍କି ଘେନି
ମୋଦେ ପୁରୁ ହେଲେ ବାହାର । ୫ ।

ଦୂରୁ କୃଷ୍ଣ ଚାହିଁ ଭୟେ ଚୋର ହୋଇ
ଭଜିଲେ ବ୍ରଜ ପୁରନ୍ଦର । ୬ ।

କୃଷ୍ଣ—

(ରାଗ—ଜଂଝୋଟି, ତାଳ—ଅଠତାଳ)

( କାନା ବାଂଶୀ ବାଲେନେ ଗାଗାରିଆ—ପ୍ରଭ )

ଏହି କି ମୋ କଣ୍ଠତଟ ରତନହାର ରେ । ପଦ ।

ନୂତନ ମଲ୍ଲିକାଣିମ ସମାଜ
ମସ୍ତକ ଚମ୍ପକ ଝର ରେ
ତ୍ରିଲୋକ ସାର ଶୋଭା ସମ୍ଭାର
କେଳକାର ରେ । ୧ ।

ଆସଇ ମନ୍ଦ ଗତି କରି ଆଲୀ
କାରେ ଦେଇ କର ଭର ରେ
ପଙ୍କଜ ପାଦ ହଂସକ ନାଦ
ଜ୍ଞାନହର ରେ । ୨ ।

କୁନ୍ଦ ସୁନ୍ଦରତର ଦରହାସ
ଅପୂର୍ବ ପୀଯୂଷଧାରା ରେ
ମିଶାଇ ଯୋଷା- ହ୍ରିବ ବରଷା
କରେ ଧରାରେ । ୩ ।

ଅଙ୍ଗ ସମ୍ଭୂତ ପରିମଳ କରେ
ଭୃଙ୍ଗଙ୍କୁ ସମ୍ଭ୍ରମେ ଭରାରେ
କ ଭଙ୍ଗି ମାରେ ଶୁଭାଙ୍ଗୀ ମାନରେ
ନେଷ-ଚ୍ଛୁରା ରେ । ୪ ।

ଏକାଳେ ପାଣ ସଜନୀଙ୍କ ରାଧା
ଭାଷ ପ୍ରକାଶିଲେ ଧୀରତରେ
କଶୋରଚନ୍ଦ୍ର ଭାବେ ରାଜେନ୍ଦ୍ର
ନୃପହ୍ରାର ରେ । ୫ ।

ରାଧା—

(ରାଗ—ହିନ୍ଦୁସ୍ଥାନୀ ଭୈରବୀ, ତାଳ—ଆଦି)

(ନ ଜାଣଇ କଛି ମୁହିଁ—ପ୍ରଭ)

କହ କହ ସହଚରୀ କାହିଁକ ମନେ ଏପରି
ଲାଗଇ ଗୃହିଁବା ଷଣି ଏ ବପ୍ର ମାଧୁରୀ । ପଦ ।

ଧଇର୍ଯ୍ୟ ନାଶଇ ମନୁ ଏ ଯୁବକ ଅପଘନୁ
ଇନ୍ଦ୍ରନୀଳମଣି ପରି ସୁକାନ୍ତ ପ୍ରସରି । ୧ ।

ଲୋଚନ ଚଲତକପୂର୍ତ୍ତି ସଖୀମସ୍ତକଦୂର୍ତ୍ତନ
ଉପୁ ପ୍ରେମାନନ୍ଦ ସ୍ରୋତେ ହୃଦ ହୁଏ ପାରି । ୨ ।

କି ଗୋ ଏ କି ଚମତ୍କାର ମାନସ ଉତ୍କଣ୍ଠାଭର
ପ୍ରବଳ ପୁଲକ ଜାଲେ ତନୁ ଗଲା ପୂରି । ୩ ।

କୁଳୀନ ଯୁବତୀ ହୋଇ ପର ପୁରୁଷରେ ସନ୍ଧି
ଚିତ୍ତ ଯା ବଳେ ଏ ଯେନ ପ୍ରାଣ ଦେବ ହାରି । ୪ ।

ଶୁଣି ଲଳିତା ସେକାଳେ ରାଧାଙ୍କୁ ବୋଧି କହିଲେ
ଭଣେ ଶ୍ରୀକିଶୋରଚନ୍ଦ୍ର ରାଜନ ବଳାରି । ୫ ।

ଲଳିତା—

( ରାଗ—ସୌରାଷ୍ଟ୍ର, ତାଳ—ଏକତାଳି )

(ନାବୋଲ ନା ମାହାରାଜ—ପ୍ରଭୃ)

ନ ଭୁଲରେ କୁନ୍ଦ ସୁହାସୀ । ପଦ ।

ବକ୍ଷ ପରେ ଯେତ୍ର ଅକ୍ଷହାର ସ୍କନ୍ଧେ ନବ ଗୁଞ୍ଜ ସୂତ୍ରଧାର
ଘଟିଲ ଶ୍ରୀଚନ୍ଦନ ବିନ୍ଦୁ ଗ୍ରୁହାଁ ମାରକ ବାସି । ୧ ।

କୋଟି ମନ୍ମଥ ଶୋଭକୃତ୍ତ ମସାର ତମାଲ ରମ୍ୟ ମୂର୍ତ୍ତି
ଯେନ ପ୍ରିୟ ସଖୀ ନଷ୍ଟେ ଏ ନିକୁଞ୍ଜ ବିଳାସୀ । ୨ ।

ଚନ୍ଦ୍ରୋଦୟ ବିନା ଚନ୍ଦ୍ରକାନ୍ତ ଦ୍ରବ ପାରେ କି ? କହ ସଙ୍ଗାତ
କୃଷ୍ଣ ବିନା କେ ତୋ ଚିତ୍ତ ମୋହିପାରେ ସୁକେଶୀ ।୩।

ରାଧା ଲଳିତାର ପ୍ରିୟ ଭାଷେ ପ୍ରେମ ମନ୍ଦାକ୍ଷରେ କହେ ତୋଷେ
ରାଜଇନ୍ଦ୍ର ଦେବ ଭଣେ କୃଷ୍ଣ ପାଦ ମନାସି । ୪ ।

ରାଧା—

( ରାଗ—ପାନ୍ଥବରାଳି, ତାଳ—ଏକ )

( ଏ ସାବେ ଦାର୍ଜି ଯୌବନ ମେ—ପ୍ରଭ )

ଆହା ଏ ଭଙ୍ଗୀ କି ଶୋଭନ ମା କେଡ଼େ ଶୋଭନ ମା
ସତେ କି ସହି ଏ ମୋହନ । ପଦ ।

ଚଞ୍ଚଳ ଚିକୁର ଦୃଗଞ୍ଚଳ ଦୂରରୁ
ହରି ନଅଇ ମୋ ମନ । ୧ ।

ଶୃଙ୍ଗାରେଶ୍ୱର କରୁଣାର ଆକର
ପ୍ରପନ୍ନ-ହୃଦ-ଚନ୍ଦନ । ୨ ।

ସଖି ଏ ବ୍ରଜ- ରାଜ ଯୁବତୀ ବ୍ରଜ
କଞ୍ଜବନ ବିକର୍ତ୍ତନ । ୩ ।

ଚନ୍ଦ୍ରବଦନ ଅଛୁ ନେଦେ ମଦନ
ହୃଦ ହେବ ମୋ ସଦନ । ୪ ।

ବିଶାଖା ତୋଷେ କୁନ୍ଦଲତାକୁ ରୋଷେ
ଭଣେ ରାଜ-ମଘବାନ । ୫ ।

ବିଶାଖା—

(ରାଗ—ସ୍ତୋତ୍ର, ତାଳ—ଆଦି)

( ନାହିଁ ମୋ ଲୋଡ଼ା ଏ ଗୁଞ୍ଜା—ପ୍ରଭ )

ମୋହି ହେଲୁକି ଏହି ଶୋଭାରେ । ପଦ ।

ସହି ଆଜ ଖୋଜ ଖୋଜ
ଘଟାଇଲୁ ଭୂଦେବ ଭବରେ । ୧ ।

ଭଲ ପାଅ ଜାଣୁ ଲାଅ
ପାଇଥିବୁ ତୁ ରହସ୍ୟ ରେ । ୨ ।
ଯୁବାବୃନ୍ଦ- ରେ ମିଳନ୍ଧ
ଏସ୍ବ ତୁ ସତେ କୁନ୍ଦଲତା ରେ । ୩ ।
ଶ୍ରୀ କଶୋର ସୁଧାକର
ଗଜେନ୍ଦ୍ର କୃଷ୍ଣ ପଦେ ଜୁହାରେ । ୪ ।

ଗାହାକ—

(ରାଗ—କେଦାରଗୌଡ଼ା, ତାଳ—ଝୁଲୁଝ୍ନ)

(କାହିଁକ ନ ଆସିଲେ—ପ୍ରଭ)

ଏ ଅନ୍ତେ ଶୁଣ ଆହେ କନ୍ନରକୁଳମଣ୍ଡନ
ରାଧାକୃଷ୍ଣଙ୍କ ଶୃଭଚକ୍ଷୁ ହେଲା ତ ମିଳନ । ପଦ ।
ଚରକାଳ ଦରିଦ୍ର ଲଭଲ ପ୍ରଚୁର ଧନ
ଅନ୍ୟୋନ୍ୟ ମୁଖକଞ୍ଜେ ମଜ୍ଜିଲେ ନେତ୍ର-ଖଞ୍ଜନ ।୧।
ଜଟିଳା ଏ ସମୟେ ପ୍ରବେଶ ହେଲା ବଦନ
ଘେନାଇ ଦାସୀ କରେ ନାନା ଉପହାରମାନ ।୨।
ମଧୁମଙ୍ଗଳ ଦେଖି ଭାଷିଲା ମୋଦେ ବଚନ
ଭଣେ କଶୋରଚନ୍ଦ୍ର ରାଜ-ପାକଶାସନ ।୩।

ମଧୁମଙ୍ଗଳ—

( ରାଗ—ନାଦନାମକ୍ରିୟା, ତାଳ—ଏକ )

(ବାଲ ରାତ୍ତ ହୁଅଇ ମୋତେ—ପ୍ରଭ)

ପୂଜା ରାତ୍ତ ଭଲେ ମୁଁ ଜାଣେ ଜରଣ । ପଦ ।
ଏଥେ ମୋର ଅଧିକାର ବ୍ରଜବାସୀ ଏ ଗୋପର
ମୋ ଯଜମାନ ଅଟନ୍ତ । ୧ ।

ଥାଉ ଏ ଫୁଲ ଚନ୍ଦନ ଆଣ ମୋ ସନ୍ନିଧାନ
ଖଣ୍ଡ ଲଡ଼ୁକୁ ଝଟତ । ୨ ।
ଫଳ ନୋହିବ ଦକ୍ଷିଣା କଲେ ଏଥିରେ ଉଣା
ବିବେକ କର ଜରନ୍ତି । ୩ ।
ଶୁଣି ତା ଜଟିଳା ବୋଲେ ଏ ରସରେ ଭୁଲିଲେ
ରାଜ-ବାସବ ଭୂପତି । ୪ ।

ଜଟିଳା—

(ରାଗ—ଖମାଚ, ତାଳ—ଆଡ଼ା)

( ତୁ କ ସଉଭାଗ୍ୟ ଅରଜନ୍ତୁ ଘରେ ରେ—ପ୍ରଭୃତି)

ତୁ ତ ଅଛୁ ମୋହନର ପ୍ରିୟ ଗୃହ ରେ । ପଦ ।
ଏ ବ୍ରଜମଣ୍ଡଳେ ତୋ ବୁଦ୍ଧିବଳେ
ଶ୍ରୀହରି ନୂତନ ନାରୀଙ୍କ ହେଲେ
ଛଡ଼ାଇଲୁ କୁଳାଗ୍ରହ ରେ । ୧ ।
ପୌର୍ଣ୍ଣମାସୀଙ୍କର ଗୌରବ ଘେନ
ତୋ ଚଞ୍ଚଳ ଗୁଣ ଥିଲେହେଁ ଜାଣି
କରୁନାହିଁ ତିରସ୍କାର ରେ । ୨ ।
ଏ ଶାନ୍ତ ଶ୍ୟାମଳ ମୂରତି ରବି
ପୂଜା କରାଇବେ ମଙ୍ଗଳ ଭାବି
ରହିଥା ଅଳ୍ପ ତୁ ଦୂରରେ । ୩ ।
ସକଳ୍ପ ନିମନ୍ତେ ହରି ସେକାଳେ
ଶ୍ରୀମତୀଙ୍କ ନାମ ଗୋତ୍ର ପୁଚ୍ଛିଲେ
ଭଣେ ରାଜ-ପୁରନ୍ଦର ରେ । ୪ ।

କୃଷ୍ଣ—

(ରାଗ—ପାନ୍ତୁବରାଳ, ତାଳ—ଏକ)

(ପରାଣ ମିତ, ପଠୁଉଛ ତାକୁ ସନ୍ଦେଶ—ପ୍ରତି)

କହ କଲ୍ୟାଣୀ,
ତୋ ନାମ ଗୋଟ ସୁଲକ୍ଷଣୀ । ପଦ ।

ସୁନ୍ଦରପଣେ ତୋ ସମେ ଜଣେ
କୁନ୍ଦରଦନା ନାହିଁ ଭୁବନେ
ସେ ଅପରୂପ ରୂପାନୁରୂପ
ନାମ ଦେଇଥିବେ ବାପ୍ପ ଗୋ । ୧ ।

କଞ୍ଜନକର ଖଞ୍ଜନ ବର
ମଞ୍ଜୁଳ କଞ୍ଜ ଗଞ୍ଜନ ଚ୍ଛୁର
ନୟନା ଭବ୍ୟ ଲକ୍ଷଣ ସର୍ବ
ତୋ ଶ୍ରୀଅଙ୍ଗେ ପୂରିଅଛୁ ଗୋ । ୨ ।

ନିର୍ଜିତ ଶାତକୁମ୍ଭ ସୁକୁମ୍ଭ
କୁମ୍ଭୀ ଜମ୍ଭାରି କୁମ୍ଭି କୁମ୍ଭ
ଉରଜା ଗୁରୁ ନାଗନାଚପୋନ୍ନ
ତୋ ଯଶ ଡ଼କ୍କା ବାଜୁଛୁ ଗୋ । ୩ ।

ମଣ୍ଡିଥିବୁ ତୁ ଯାହାର ବାସ
ପଣ୍ଡିତା ଲକ୍ଷ୍ମୀ ତେଜି ତା ପାଶ
ନ ଯିବେ କେବେ ଆହା କି ଭାଗ୍ୟ
ଜଟିଳା ତଟେ ପାଇଛୁ ଗୋ । ୪ ।

କୃଷ୍ଣ ପ୍ରଣୟଗର୍ଭ ଭାରତୀ
ଶୁଣି ଶ୍ରୀମତୀ ବଦନ ପୋଡି
ରହୁ ରଭସେ ଜଟିଳା ଭାଷେ
ରାଜେନ୍ଦ୍ର କୃଷ୍ଣେ ନମୁଛୁ ଗୋ । ୫ ।

ଜଟିଳା—

(ରାଗ—ସିନ୍ଧୁ ଖମାଚ, ତାଳ—ଏକ)

(ଚୁକା କଷାମି ମାଠା ଲଡ଼ାବେ—ପ୍ରଭୃ)

ଏହା ଜନମ ନକ୍ଷତ୍ର ନାମ
ରାଧା ବୋଲି ଖ୍ୟାତ ଜାତକରେ । ପଦ ।

ଶ୍ରୀମତୀ ଆଦି ନାମ ସମ୍ପାଦି
ସ୍ନେହେ ଡାକନ୍ତି ସଖିନକରେ । ୧ ।

ଯଶୋଦାପୁତ୍ର ପ୍ରିୟ ମଇତ୍ର
ମଧୁମଙ୍ଗଳ ଅଛୁ ପାଶରେ । ୨ ।

ଏ ଯେବେ ଭୟ ହୁଏ ଉଦୟ
ନ ଶୁଣୁ ନାମ ଉଚ୍ଚାର ଧୀରେ । ୩ ।

ଶୁଣି ଏ ବାଣୀ ସେ ଦ୍ୱିଜ ଭଣି
ରାଜେନ୍ଦ୍ର କୃଷ୍ଣ ପଦେ ଜୁହାରେ । ୪ ।

କୃଷ୍ଣ—

(ରାଗ—ଜଂଝୋଟି, ତାଳ—ଝୁଲା)

(କାହ୍ନୁଁକି ରେ କିଶୋରୀ—ପ୍ରଭୃତି)

ନମୋ ନମୋ ରାସ୍ୱରତେ ହେ ଦାନପତେ
ଗୁପ୍ତୀରମଣ ପରପୂରଣ
କର ବାଞ୍ଛା ଯେତେ । ପଦ ।

ସୁଧୀର ଜୀବବନ୍ଧୁ ରାଗ-ସୁଗୁଣ-ସିନ୍ଧୁ
ଶରଣବତ୍ସଳତାକୁ ପ୍ରକାଶ କର ଜଗତେ । ୧ ।

ମଙ୍ଗଳଦା ନମେଷ ଫଗୁରୋଗ ରସେ ତୋଷ
ମାନସ ମୁଁ ନିଜ ଦାସ ଜନ ବୋଲି ଧେନ ଚତେ । ୨ ।

କଞ୍ଜ ଶୋଭିତ ପାଣି ନାରରେ ଦାନମଣି
ପରସନ ହୁଅ ମତେ ସେବାରେ ଥିବ ନିରତେ । ୩ ।

ମଧୁମଙ୍ଗଳ ଶୁଣି ହସି ଭାଷିଲେ ବାଣୀ
ଭଣିଲେ କିଶୋରଚନ୍ଦ୍ର ରାଜେନ୍ଦ୍ର ନମେ ସତତେ । ୪ ।

ମଧୁମଙ୍ଗଳ—

( ରାଗ—ଶଙ୍କରାଭରଣ, ତାଳ—ଏକ )

( ସତେ କପର ଏ ବୃନ୍ଦାବନ—ପ୍ରଭୃତି )

ବ୍ରଜନଗରୀ ନାଗରୀମାନେ
ଶୁଣିଛନ୍ତି କେବେ କର୍ଣ୍ଣେ । ପଦ ।

ଆମ୍ଭ ବେଦବର ଜାତ ଅର୍ଥ ମନ୍ତ୍ରସାର
ତୁମ୍ଭେ ତ ଇତର ଜନମାନଙ୍କୁ ଗୋଚର । ୧ ।

ତଗ ଆନ୍ଧ ଯେତେ ତହିଁ ପଣ୍ଡିତା ସମସ୍ତେ
ତୁମ୍ଭ ବୁଦ୍ଧି ଏଥେ ନ ଖେଳିବ କଦାଚିତେ । ୨ ।
କୁସୁମମଞ୍ଜୁ-ଶାଖା ତୃଷ୍ଣାସ୍ତ ବର୍ଣ୍ଣରେ ଲେଖା
ହୋଇଛୁ ରସିକା ଶୁଭଙ୍କର ଏ କାରିକା । ୩ ।
ଶୁଣି ସଖିଗଣେ ହସି ଗଲେ ଅର୍ଘ୍ୟଦାନେ
ରାଜଇନ୍ଦ୍ର ଭଣେ କୃଷ୍ଣେ ନମି ଅନୁକ୍ଷଣେ । ୪ ।

ସଖୀ—

(ରାଗ—ନାଦନାମକ୍ରିୟା, ତାଳ—ରୂପକ)

(ହେ ଭାଇମାନେ ଆସ ବହନେ—ପ୍ରଭୃତି)

ନମୋ ଦିନେଶ ନମୋ କାନ୍ତୀଶ
ଶୁକ୍ଳତୁଣ୍ଡଛବି ରବି ବ୍ୟୋମବିହାରୀ । ପଦ ।

ଧୃତ କମଳ ହୃତ କଶ୍ମଳ
ତପନ ବୃଷ୍ଟି-ମୋଚନ-ନିଗ୍ରହକାରୀ ।
ଉଦୟାଚଳ- ତିଳକ କାଳ-
କରତା ଗୋପକୁ ରଖ ବିପଦୁଁ ତାରି । ୧ ।

ଦିଗ୍‌ବାଳାବର ସୁକର୍ଣ୍ଣପୂର
ଲୋକାଲୋକାଲୋକ ଲୋକ-ରୋଗ ନିବାରି ।
ନୀରଜଗର୍ଭ ଦାସ୍ତ ସୁବର୍ଣ୍ଣାଭ
ନିଷ୍କାମ କର୍ମୋପଦେଶପ୍ରଦ କ୍ଷପାରି । ୨ ।

ପ୍ରତ୍ୟକ୍ଷଦେବ ସ୍ୱାସ୍ଥ୍ୟବିଭବ
ଦାତା ସର୍ବକର୍ମ ସାକ୍ଷୀ ପୂର୍ବଦେବାରି ।

କୃତଯତନ ଚନ୍ଦ୍ର ମିଥୁନ
ଗଗନାଙ୍ଗଣ-ପ୍ରଦୀପ ଯେନ ସୁହାର । ୩ ।

ସହସ୍ରକର ହେ ବରକର
ରୁଚିରାଧିକା-ପଦ୍ମ-ପ୍ରଣୟୀ ହର ।
ହେ ଗ୍ରହେଶ୍ୱର ସୁଦୟା କର
ନମେ କିଶୋରଚନ୍ଦ୍ର ରାଜ-ବଳାର । ୪ ।

ଗାହାକ—
( ରାଗ—ବେହାଗ, ତାଳ—ମିଶ୍ରରୂପ୍ )

( ଚନ୍ଦ୍ରବଦନା ମୋ ଅଙ୍କମଣ୍ଡନା—ପ୍ରଭୃ )

ଶୁଣ ମୋ ବାଣୀ କିନ୍ନର ଅଗ୍ରଣୀ । ପଦ ।
ପ୍ରମୋଦେ ହରି କୁସୁମାଞ୍ଜଳି
ରାଧିକା କରେ ଦେଲେ ସେକ୍ଷଣି । ୧ ।
ଦେଲ୍ କରଣ୍ଡି ଆଣି ଶ୍ରୀମଣ୍ଡି
କନ୍ତୁ ମୁଦ୍ରିକା ଦକ୍ଷିଣା ଭଣି । ୨ ।
ମଧୁମଙ୍ଗଳ ନେଲ୍ ସକଳ
ଖେଦିଗ ମାଲ୍‌ପା ଲଡ଼ୁ ଲବଣୀ । ୩ ।
ଜଟିଳା କୁଟିଳେ ଗୋପିଏ ଗଲେ
ବନେ ଫେରିଲେ ମୁରଲୀପାଣି । ୪ ।
ଏଣେ ପ୍ରବେଶି ସେ ପୌର୍ଣ୍ଣମାସୀ
ମୋଦେ ଭେଟିଲେ ନନ୍ଦ-ଘରଣୀ । ୫ ।
ବସି ତା ପାଶେ ଭାଷନ୍ତି ତୋଷେ
ଭଣିଲେ ରାଜ ଅମରମଣି । ୬ ।

ପୌର୍ଣ୍ଣମାସୀ—

( ରାଗ—ନାଦନାମକ୍ରିୟା, ତାଳ—ଝୂଲ )

( ତୋହର କାମ କର—ପ୍ରଭ )

ଶୁଣ ଗୋ ମୋର ବାଣୀ
ବ୍ରଜରାଜ ପ୍ରିୟ ପାଟ ମହାରାଣୀ । ପଦ ।

ତୁମ୍ଭର କଲ୍ୟାଣ ସାଧନ ପ୍ରଧାନ
କାମ ମନେ ଭାବ ଆସିଲ ଏକ୍ଷଣି । ୧ ।
ମାନ ଗୋ ନନ୍ଦାନେ ଏ ବ୍ରଜ ଭୁବନେ
ଶ୍ରୀମତୀ ସମାନେ ନାହିଁ ସୁଲକ୍ଷଣୀ । ୨ ।
ସାଧବୀ ଲକ୍ଷଣ ଆଦ ସାଧୁଗୁଣ
ରାଧାର, ଦୁର୍ବାସା ମୁଖୁ ଅଛୁ ଶୁଣି । ୩ ।
ଏହେତୁ ତା ହସ୍ତ- ରନ୍ଧନ ପଦାର୍ଥ
ଭୁଞ୍ଜନ୍ତୁ ହରଷେ ସେ ମୁରଲୀପାଣି । ୪ ।
ମୋଦେ ଏହା ଶୁଣି ଦାସୀକି ସେକ୍ଷଣି
ପେଷିଲେ ଜଟିଳା ପାଶେ ନନ୍ଦରାଣୀ । ୫ ।
ଜବେ ଦାସୀ ଯାଇ ଆନନ୍ଦେ କହଇ
ଜଟିଳାକୁ ଭଣେ ରାଜ-ବଜ୍ରପାଣି । ୬ ।

ଦାସୀ—

(ରାଗ—ଜଂଝୋଟି, ତାଳ—ରୂପ)

(ତା ମୁଖ ସୁଧାମୟୂଖ ଭଲେ ନାହିଁ ଶରେଖି—ପ୍ରଭ)

ଆମ୍ଭ ଯଶୋବନ୍ତୀ ରାଣୀ ହୋଇ ଗୋ ତୋଷମନ୍ତ
ଜଟିଲେ ତୁମ୍ଭଙ୍କୁ ଏ ଆ- ଦେଶ ଦେଇ ଅଛନ୍ତ । ପଦ ।

ବଳନ୍ତୁ ତାଙ୍କ ଶରଧା　　ଅଭିଶସ୍ୟ ରାଧାରେ
ଲଳିତା ସଙ୍ଗେ ତାହାଙ୍କୁ　　ଦେଖନ ଆସ ସତ୍ୱରେ । ୧ ।
ଆଜ ସୌଭାଗ୍ୟ ତୁମ୍ଭର　　ଅଛୁ ବହୁତ ଲଭ
ପ୍ରଭୁମାନଙ୍କର କୃପା　　ସମ୍ଭାବିବା ଦୁର୍ଲଭ । ୨ ।
ନିଜେ ସେ ଅମୂଲ୍ୟ ବସ୍ତ୍ର　　ଅଳଙ୍କାରକୁ ବାଛୁ
ରଖିଛନ୍ତି ଶ୍ରୀମତୀକ　　ଦେବାକୁ ଶତ୍ରେ ପାଞ୍ଛି । ୩ ।
ଫରମାସିଛନ୍ତି ମତେ　　ନ ଆସିବୁ ଗୋ ଛୁଡ଼ି
କାଳେ ନ ଦେଖିବ କଥା　　ଅବୁଝାଣ ସେ ବୁଢ଼ୀ । ୪ ।
ଶୁଣି ଲଳିତାକୁ ପାଶେ　　ଡ଼ାକ ଜଟିଳା ରୋଷେ
ଶ୍ରୀ କିଶୋରଚନ୍ଦ୍ର ରାଜ-　　ଇନ୍ଦ୍ର ଭଣେ ଏ ରସେ । ୫ ।

ଜଟିଳା—

(ରାଗ—ସେହେନା, ତାଳ—ଝୁମ୍ପ୍)
( ଦେଖ ଦେଖ ଏହା ଶଭ—ପ୍ରଭ )

କହ ଗୋ ଲଳିତା ତୁହ ବଧୂକୁ ଯାଇ । ପଦ ।

ଆସୁ ସେ ହୋଇ ସଜ　　ଡ଼କାଇଛନ୍ତି ଆଜ
ନନ୍ଦ ମହାଦେଈ　　ପୁରକୁ ନେବାପାଇଁ ।୧।
କପଟ ତାଙ୍କ ଆଜ୍ଞା　　କରିବା ଗୋ ଅବଜ୍ଞା
ବାସକର ଗୋପ　　ନଗରେ ରହିଥାଇ ।୨।
ଶ୍ରୀହରି କାନନରୁ　　ନଆସୁ ତାଙ୍କ ପୁରୁଁ
ବାହୁଡ଼ି ଆସିବା　　ସଙ୍ଗେ ତ ଥିବ ମୁହିଁ ।୩।
ଶୁଣି ଲଳିତା ତୋଷେ　　ଯାଇ ଶ୍ରୀମତୀ ପାଶେ
ଭଣିଲେ କିଶୋର　　ଚନ୍ଦ୍ର ଶ୍ରୀକୃଷ୍ଣ ଧ୍ୟାୟି ।୪।

ଲଳିତା—

(ରାଗ—ଜଂଝୋଟି, ତାଳ—ରୂପ୍)

(ଗୋଷ୍ଠଚନ୍ଦ୍ରମା ଆସିବେ ଆଜ—ପ୍ରଭି)

ରଙ୍ଗିବାନମ୍ମି ସାଜ ସୁବେଶ ରେ
ବେଗେ ଆସ । ପଦ ।

ବ୍ରଜରାଜ ମହା- ରାଣୀ ରେ ସୁଦେହା
ଡ଼କାଇଛନ୍ତି ବହୁ ହରଷ ରେ । ୧ ।
ଘୁମୁ ମୁଦୁସୁଲି ଆସିଛି ଫଖୋଳ
ଆମ୍ଭ ପାଶକୁ ଘେନ ଆଦେଶ ରେ । ୨ ।
ପ୍ରମୋଦେ ଜରଟ୍ଟି ଦେଲେ ଅନୁମତି
ଏଣିକ ଭାଗ୍ୟ ହେବ ପ୍ରକାଶ ରେ । ୩ ।
ବରବେହା ଜବା- ଧର ଚାଲ ଯିବା
ବୁଲି ଦେଖିବା ତାଙ୍କ ଉଆସ ରେ । ୪ ।
ଶୁଣି ଭାଷେ ରାଧା ମନେ ବହୁ ଶ୍ରଦ୍ଧା
ରାଜ-ବାସବ ଭଣେ ଏ ରସରେ । ୫ ।

ରାଧା—

(ରାଗ—ସ୍ତ୍ରୋଟ, ତାଳ—ଝୁଲ୍)

(ନବ ଛଇଲ୍ ମଣ୍ଡନ ମୋହନ—ପ୍ରଭି)

ସତ କହ ଗୋ ମିତଣି
ମୋ ଆଗେ
ଡ଼କାଇଛନ୍ତି କ ନନ୍ଦରାଜ ପାଟରାଣୀ । ପଦ ।
କେତେ ଦିନୁ ମୁଁ ଭାବ- ଥିଲି ଥରେ ଦେଖିବ
ବୋଲି ତାଙ୍କ ନଗର ମନୋହର ମଣ୍ଡଣି । ୧ ।

ମୋହନଙ୍କ ମନ୍ଦର          ସୁଷମା ଆଡ଼ମ୍ବର
ଅମରାବତୀପୁର ଶୋଭାକୁ ଥିବ ଜିଣି । ୨ ।

ବେଶ ହେବାକୁ କାଳ          ନାହିଁ ସଖି କୁନ୍ତଳ
ଆଜ ନ ଫିଟାଇବ ଥାଉ ପଛେ ଏ ବେଣୀ ।୩।

କର କାହିଁକି ହେଳା          ବେଗେ ଦିଅ ଗୋ କଳା
ଶାଢ଼ୀ ସହ କାଞ୍ଚୋଲି ଉପରଣକୁ ଆଣି । ୪ ।

ସକଳେ ରାଧା ଭାଷେ          ମିଳି ଜଟିଳା ପାଶେ
ଗଲେ ସେ ଦେଖି ତୋଷେ ନେଲି ସଙ୍ଗତେ ଘେନି ।୫।

ରାଜଦ୍ୱାରେ ଝଟତ          ପ୍ରବେଶୁଁ ଯଶୋବତୀ
ଭାଷିଲେ ରାଜଇନ୍ଦ୍ର ବନ୍ଦେ ମୁରଲୀପାଣି । ୬ ।

ଯଶୋଦା—

( ରାଗ—ଧନାଶ୍ରୀ, ତାଳ—ଆଦ )

(କାହିଁକି ଶ୍ରୀମନ୍ତ ରେ—ପ୍ରଭ)

ଆରେ ମୋ ଗଳାହାର ନୟନତାର । ପଦ ।

ନ ଦେଖି କେତେ          ଦିନୁ ମୁଁ ତତେ
ହୋଇଛୁ ଅନ୍ଧ ପରି
ଚୂରର ଶରୀ ।୧।

ରେ ନବ ବାଳୀ          ମୋ କୋଳେ ଖେଳ
ସବୁ ଦୁଃଖ ପାଶୋରି
ଜବେ ସୁଧୀରା ।୨।

ଆମ୍ଭ ନିବାସେ ରହ ତୁ ମାସେ
ମୋର କାମନା ପୂର
ମିଳ ଚଳୁର ।୩।

ମୁହିଁ ନପାରେ ଗୃହ ବ୍ୟାପାରେ
ହୁଅ ମୋରେ ଆଶ୍ରା
ପଲ୍ଲବାଧର ।୪।

ଶୁଣି ଜଟିଳା ଦୁଃଖେ ଭଣିଲା
ଭଣେ ଚକ୍ରିଣୀ ଧର
ମାନବ-ହାର ।୫।

ଜଟିଳା—

(ରାଗ—ଜଂଝୋଟି, ତାଳ—ଆଦ)

( ମୋଠାରେ ଏପର ପରିବାଦ—ପ୍ରଭୃ )

ତୁମ୍ଭରେ ମାତ୍ର ମୁଁ ଜଣାଉଛୁ ଏତିକ
ଯଶୋବନ୍ତି ମହାରାଣୀ ଆଣ ଦ୍ରବ୍ୟ ମତିକ । ପଦ ।

ତୁମ୍ଭ କୁମାରମଣି ଚଞ୍ଚଳ ଗୁଣ ଜାଣି
ନଚ୍ଛଡ଼େ ଏହାକୁ ପୁର ପ୍ରତିଦ୍ୱାର କତିକ । ୧ ।

ଶ୍ୟାମ ଦୃଷ୍ଟିପଥରେ ପଡ଼ିବା ମାତ୍ରକେ ଥରେ
ସମ୍ଭାଳ ପାରିବ କେହ୍ନ ନ ହଜାଇ ଧୃତିକ । ୨ ।

ପତିବ୍ରତା-ଅଗ୍ରଣୀ ବୋଲ ବଧୂକୁ ଜାଣି
ଥିଲେହେଁ ମୋ ମାନସରେ ପାଉଥାଏ ତ ଭୀତିକ ।୩।

ଆଜ୍ଞା ହେଲା ଯା ମାସେ ରହୁ ବୋଲି ହରଷେ
ଏ କଥା ନକହ ଆଉ ଯେନ ମୋ ବଦନଟିକ । ୪ ।

ବଡ଼ ମୁଁ ବୟସରେ ଅଞ୍ଚଳକୁ ପ୍ରସାରେ
ନକର ତିରସ୍କାର ମୋ ପୁରେ ନେବ ରାତିକ । ୫ ।

ଭଣିଲେ ଯଶୋଦାଙ୍କି ପାଇ ଆଶ୍ଚର୍ଯ୍ୟ ମତି
ଭଣେ ରାଜେନ୍ଦ୍ର ବହ୍ନି କୃଷ୍ଣ ପଦ୍ମପାଦେ ନତି । ୬ ।

ଯଶୋଦା—

( ରାଗ—ସେନା ବା ସିଂହକା, ତାଳ—ଝମ୍ପ୍ )

(ମୋ ଦୁଃଖିଧନ ପଦ୍ମଲୋଚନ—ପ୍ରଭୃତି)

କି ଧ୍ୟାନମତି ତୁ ଗୋ ଜନନୀ
କହ ମୋ ଆଗରେ ଏ ବ୍ରଜ ନଗରେ
କାହାକୁ କି କଲା ମୋ ବାଳମୂର୍ତ୍ତି । ପଦ ।

ନିଶାରେ ସ୍ୱପ୍ନ ଲଭି ରାହିଁ ଭୟ ପାଇ
ଚମକି ମୋ କୋଳେ ରହେ ମୁଖ ପୋତି ।୧।

ଯେ ଶିଶୁଙ୍କ ସଙ୍ଗେ ଧୂଳିଖେଳ ରଙ୍ଗେ
ଛୁଇଁ ନାହିଁ ତାକୁ ଦେଉ ଅପଖ୍ୟାତି ।୨।

ତପନ ଉଦୟୁ ପୂର୍ବୁଁ ମୋ ତନୟୁ
ମଣିହିଁକି ସାରି ବନେ ଯାଏ ନିତି ।୩।

କରିଥିଲି ଶ୍ରଦ୍ଧା କେତେ ଦିନ ରାଧା
ରହିବାକୁ ଡୋଡେ ଲାଗେ ଯେତେବେ ଖ୍ୟାତି ।୪।

ଆଜକ ମାନକ ରନ୍ଧ ନଜେ ପାକ
କରିବ ଆମ୍ଭର ସଦନେ ଶ୍ରୀମତୀ ।୫।
ଶୁଣି ତା ଜଟିଳା ବନସ୍ତେ ଘଷିଲା
ଭଣେ କୃଷ୍ଣ ଧାଇଁ ରାଜ-ବଳାରାତ ।୬।

ଜଟିଳା—

(ରାଗ—ଜଂଝୋଟି, ତାଳ—ମିଶ୍ରଜାତ ଗୃପ୍)
(କେଉଁ ଧୂର୍ତ୍ତ ଯତ ଦୀକ୍ଷା ଦେଲା—ପ୍ରଭ)

ନକହ ଗୋ ମତେ ରୋଷ ବାଣୀ
ନନ୍ଦ ପାଟରାଣୀ । ପଦ ।

କେତେ ଦିନ ହେଲେ ତବାଦେଶ ବଳେ
ରହନ୍ତା ମୋ ପୁତ୍ର ଥିଲେ ଜାଣି । ୧ ।
ଏବେ ତୁମ୍ଭ ଆଜ୍ଞା ନ କରେ ଅବଜ୍ଞା
ରନ୍ଧନ କରୁ ଏହ୍ୱକ୍ଷଣି । ୨ ।
ଖନ୍ଦାଦ୍ଧର ଲାଗେ ବଜେ କର ଆଗେ
ଅସ୍ତ ହେଲେଣି ତ ଦିନମଣି । ୩ ।
ରାଧାଙ୍କୁ ଯଶୋଦା ଭକ୍ଷେ ବହୁ ଶ୍ରଦ୍ଧା
ଭଣେ ମୋଦେ ରାଜ-ବଜ୍ରପାଣି । ୪ ।

ଯଶୋଦା—

(ରାଗ—ବଳାହ୍ମର, ତାଳ—ରୂପକ)
(ରାଧାସ୍ତନ କନକ କୁମ୍ଭାନ୍ତରେ—ପ୍ରଭ)

ବୃଷଭାନୁ ନନ୍ଦନୀ ଆସ ଆସ ମୋ ଧନୀ
ଶରଦ ଚନ୍ଦ୍ରାନନୀ ଶୁଦ୍ଧ ସ୍ୱର୍ଣ୍ଣ ବରନୀ । ପଦ ।

ଅଣାଇଛୁ ନୂତନ ନୀଳ ପାଟ ବସନ
କରି ତୁ ପରିଧାନ ତୋଷ କର ମୋ ମନ । ୧ ।

ଜାଣି ସବୁ ସବୁରେ ରଖାଇଛୁ ତୋ ଆଗେ
ଲୋଡ଼ା କ ହେଲେ ବେଗେ ଅଣାଇବ ତୋ ଲାଗେ । ୨ ।

ଏତେ କହି ସେକାଳେ ସ୍ନେହେ ରାଧିକା ଗଲେ
ରହସ୍ୟ ମଣ୍ଡିଲେ ଗଜେନ୍ଦ୍ର ଦେବ ବୋଲେ । ୩ ।

ରାହାକ—

(ରାଗ—ବଳାହ୍ରି, ତାଳ—ତ୍ରିପୁଟା)

(ମୁହିଁ ଛାଡ଼ିବାକୁ ଜୀବ, କରନ୍ତୁ ତ ଦୃଢ଼ ଭାବ—ପ୍ରଭୃତି)

ଶୁଣ ଧନଦ ନନ୍ଦନ ରାଧିକା କଲେ ରନ୍ଧନ
ଆସିଲେ କାନନୁ ହରି ପୁରକୁ ବଦନ । ପଦ ।

ଜାଣି ମାତା ଯଶୋବତି ନାନାବିଧ ଦ୍ରବ୍ୟ ତତି
ସୁବର୍ଣ୍ଣପାତ୍ରେ ବାଢ଼ିଲେ ପୁତ୍ର ସନ୍ନିଧାନ । ୧ ।

କହିଲେ ସବୁ ବୁଝାଇ ଶୁଣି କୃଷ୍ଣ ହୃଷ୍ଟ ହୋଇ
ସୁଧାରୁ ଅଧିକ ମଣି କରନ୍ତି ଭୋଜନ । ୨ ।

ରାଧାଙ୍କୁ ଦେବାକୁ ଯାହା ବାଛି ରଖିଥିଲେ ତାହା
କୃଷ୍ଣଙ୍କୁ ଦେଖାଇ ଦେଲେ ଲଳିତା ଅଧୀନ । ୩ ।

ତାକ ଲଳିତାକୁ ରହେ ହରି ଭାଷିଲେ ବଚନେ
ଭଣେ ଗଜେନ୍ଦ୍ର ସେ କୃଷ୍ଣ ପଦ କରି ଧ୍ୟାନ । ୪ ।

କୃଷ୍ଣ—

(ରାଗ—ସୋରଠା, ତାଳ—ଝୂଲ)

(ଜାଲକେ ସେ ଘରେ ଯମୁନା ଗୋହରି—ପ୍ରଭ)

ବାରେ ମତେ

କର ସୁଦୟା ଲଳିତେ । ପଦ ।

ତୁ ମୋ ବିଶ୍ୱାସ ସ୍ଥାନ ବୋଲି ରେ ସଜନ
କହେ ଏ କଥା ଅତି ଗୁପତେ । ୧ ।

ନୋହିବ ତ ପାଶୋର ଏ ତୋ ଉପକାର
ମୁହିଁ ତ ଥିବାଯାକ ଜୀବତେ । ୨ ।

ପରର ଉପକାର କରିଥିବା ନର
ଧନ୍ୟ ଧନ୍ୟ ବୋଲନ୍ତି ଜଗତେ । ୩ ।

ଭୂଷଣ ପେଟି ମଧ୍ୟେ ରହିବି ସୁମଧ୍ୟେ
କଞ୍ଚି ପକାଇଦିଅ ଭିତରେ । ୪ ।

ଚିନ୍ତେ ନକର୍ ଭୟ ଏକାନ୍ତ ସମୟ
ଜାଣି ଫେଡ଼ିବୁ ରାଧା ପୁରତେ । ୫ ।

କହିବ ଗୃହଁ ବାଣୀ ଧରି ତାହାର ପାଣି
କୃପା ନ କରିବକି କହିତେ । ୬ ।

ଶୁଣି ଲଳିତା ରଙ୍ଗେ ଦରହୁଁ ହାସେ
ରାଜେନ୍ଦ୍ର ଭଣେ ଚିତ୍ତ ଉପତେ । ୭ ।

ଲଳିତା—

( ରାଗ—ଫିଲୁଆ, ତାଳ—ଝମ୍ପ )

( ଆରେ ଖଞ୍ଜନନୟନା ବାରେ—ପ୍ରଭୃତି )

ଆହେ ଶ୍ୟାମଳ କିଶୋର
କି ସାହସ ଭ୍ରମର । ପଦ ।

କାହୁଁ ଏ ବୁଦ୍ଧି ଶିଖିଲ ମୋହନ
ପେଟିକା ମଧ୍ୟେ ରହିବ କେସନ
ଶୁଣିବା ବେଳୁଁ ମୁଁ ହେଲି କାତର । ୧ ।

ଏ କଥା ନ କହ ଆଉ ମୋ ଆଗେ
ଜାଣିବ ଜଟିଲା ଯେବେ କି ବାଗେ
ପାରିଦେବ ମୋର ସବୁ ଆବୁର । ୨ ।

ବ୍ରଜ ମହାରାଜ ପ୍ରିୟ ତନୁଜ
ହୋଇ ଏ ଗାର୍ହିକ କଲେ ହେ ଆଜ
ଧରା ପଡ଼ିଗଲେ ହେବଟି ଗ୍ଲେର । ୩ ।

ଏଥିରେ ଯେବେ ହେ ଲୁଚି ରହିବ
ଆମ୍ଭର ପୁରକୁ ଏଥୁ କେ ନେବ
ଚିତ୍ତରେ ଥରେ ବିବେକ ନକର । ୪ ।

କଷ୍ଟେ କଷ୍ଟେ ଅବା ଏଠାରୁ ନେବୁ
ସଜନୀଏ ଘେରିଥିବେ ତ ସବୁ
ଫେଡ଼ ବୋଇଲେ ଦେବୁ କି ଉତ୍ତର । ୫ ।

ଶୁଣି ଶ୍ୟାମ ସବନସ୍ୱେ ଭାଷିଲେ
ଶ୍ରୀକୃଷ୍ଣ ଶ୍ରୀପଦ ମୋଦେ ଘୋଷିଲେ
ରାଜଇନ୍ଦ୍ର ଦେବ ନିଶା ବାସର । ୬ ।

କୃଷ୍ଣ—

( ରାଗ—ବେହାଗ, ତାଳ—ଏକ )

(ରାଧାର ରୂପ ମାଧୁରୀ—ପ୍ରତି)

ଦୟାଳୁ ଗୁଣନିଧି ରେ କହୁଛି ଧର ତୋ ପାଣି
ଅଙ୍ଗୀକାର ବାରେ କର ଦେନ ମୋ ବିନୟ ବାଣୀ । ପଦ ।

କରିଛି ତତେ ଭରସା ନଭାଙ୍ଗ ମୋ ଚିର ଆଶା
ଆଜୁଁ ତୋର ଉପକାର
ଧନେ ହୋଇଥିବ ଋଣୀ । ୧ ।

ଯେତେ ଅଛି ବଞ୍ଚାଇବା ଉପାୟ ତା କ କହିବା
ଅଟ୍ଟ ତ ତ୍ରିଭୁବ ଚତୁରୀ-
ମସ୍ତକ-ମଣ୍ଡନ-ମଣି । ୨ ।

ତୋର ଅନୁକମ୍ପା ଫଳେ ଆଜ ଶ୍ରୀମତୀଙ୍କ କୋଳେ
ବସାଇ ସାର୍ଥ କରିବ
ତପସ୍ୟା ଶ୍ରେଣୀ । ୩ ।

ଆଉ ନିଷ୍ଠୁର ବଚନ କରିବୁ ଯେବେ ରଚନ
ନିଶ୍ଚୟେ ଜାଣ ମୋହର
ହତ୍ୟାକୁ ହେବୁ କାରଣୀ । ୪ ।

ଶୁଣି ସବିନୟ ଗିର ଲଳିତା କଲା ସ୍ୱୀକାର
ଶ୍ରୀହରି ଚରଣ ସ୍ମରି
ଭଣେ ରାଜ-ବଜ୍ରପାଣି । ୫ ।

ରାଧାକ—

( ରାଗ—ସେହେନା, ତାଳ—ଆଦ )

(ଆଜ ଏ ନୂଆ ଘଡ଼ି କ—ପ୍ରଭ)

କନ୍ଦରରାଜ ତନୁଜ
ଶୁଣ ସାବଧାନେ ହେ । ପଦ ।

ଲଳତା ପେଡ଼ି ମଧ୍ୟରେ                    କୃଷ୍ଣଙ୍କୁ ରଖି ସତ୍ୱରେ
କଣ୍ଟକ ପକାଇଦେଲ
ଯତନେ ସୁମନେ । ୧ ।

ଏ ଅନ୍ତେ ଶରଧା କର                    ଯଶୋଦାଦ ସବୁ ନାରୀ
ଭୁଞ୍ଜିଲେ ହରଷମନେ
ବସି ସ୍ୱ ଆସନେ । ୨ ।

ରତ୍ନାଲଙ୍କାର ପେଡ଼ାକୁ                    ଜଟିଳା ପୁରେ ନେବାକୁ
ପୁତ୍ରକୁ ଡାକବ ବୋଲ
ଗଲ ସ୍ୱଭୁବନେ । ୩ ।

ଯଶୋଦା ରାଣୀ ସେକାଳେ                    ରାଧାଙ୍କୁ ହସି ଭାଷିଲେ
କଶୋରଚନ୍ଦ୍ର ରାଜେନ୍ଦ୍ର
ଭଣେ ଏ କବନେ । ୪ ।

ଯଶୋଦା—

(ରାଗ—ଶଙ୍କରାଭରଣ, ତାଳ—ଝୁମ୍)

(ଛାଡ଼ ଗୋ ଏ ବରସ ପଦ୍ମାନନେ—ପ୍ରଭ)

ଆଉ କେବେ ଆସିବୁ ଆମ୍ଭ ପୁରେ
କହ କହ ନନ୍ଦନୀ ମୋ ଆଗରେ । ପଦ ।

ତୋତେ ପାଶୁ ଛୁଡ଼ିବାକୁ ଧନ
ଲେଶେ ହେଲେ ବଳୁ ନାହିଁ ମୋ ମନ
ଆଜ ତୋ ମୁହୁ ଲପନ କରିବାରୁ ବିଲୋକନ
ରଙ୍କ ନିଧି ଲଭିଲା ପରକାରେ
ନିମଗ୍ନ ହେଲି ଆନନ୍ଦ ସାଗରେ । ୧ ।

ରହିଥାନ୍ତୁ ଯେବେ କେତେ ଦିନ
ଦେଖି ତୃପ୍ତ ଲଭନ୍ତା ମୋ ନୟନ
ଜଟିଳା ତ ହୋଇ କାଳ ଜଗି ରହିଛୁ କେବଳ
ଯେନ ମିବାକୁ ହାଟି ସଙ୍ଗତରେ
କହିଲେ କେତେ ନ ଯେନେ ଚିତ୍ତରେ । ୨ ।

ଭରସି ମୋ କୋଳେ ଧନ ଥରେ
ଖେଳ ନାହୁଁ ତ ଦିନେ ସ୍ନେହଭରେ
କୁଳଦେବୀଙ୍କ କୃପାରୁ ଯହିଁ ତହିଁ ରହି ଘରୁ
ଘର ସଂସାର ଚଳା ଆନନ୍ଦରେ
ରାଜେନ୍ଦ୍ର ନମେ ଶ୍ରୀକୃଷ୍ଣ ପଦରେ । ୩ ।

ରାଧା—

( ରାଗ—ବିଳାହୁରି, ତାଳ—ଆଦି )

( ଏହି ସାମିଙ୍କ କେମିଙ୍କ—ପ୍ରଭୃ )

ମେଲାଣି ଦିଅ ଗୋ ମାଏ
ଏହି ଦୟା ଥାଉ ମୋଠାରେ ଅନୁବରତେ । ପଦ ।
କେଉଁ ସ୍ଥାନେ ହେଲେ ମୁଁ ଥିଲେ ତୁମ୍ଭ ଶ୍ରୀଛାମୁ
ନୌକର ଦାସୀଙ୍କ ଗଣେ ଜଣେ
ବୋଲି ଯେନଥିବ ଦିବ୍ୟଚିତ୍ତେ । ୧ ।

ପ୍ରତି ମାସରେ ହେବ ଯେତେ ଯେତେ ଉତ୍ସବ
ହୃଦୟ ଦେଶରୁ ପାଶୋର ନ ଦେଇ
ଉକାଉଥିବଟି ମତେ । ୨ ।

କେତେ ଦିନ ରହିବ ବୋଲି ମୁଁ ଥିଲି ଭାବ
ମିଳିହେଲ ଏବେ ବ୍ରଜଇନ୍ଦ୍ର ଭାବେ
ଶ୍ରୀକୃଷ୍ଣ ପଦ ନିରତେ । ୩ ।

ଗାହାଣି—

( ରାଗ—ଝିଂଝୋଟି, ତାଳ—ରୂପ୍ )

( ଗୁଡ଼ ବଭ୍ରମ ଗୁଣଗ୍ରାମ କେଡ଼େ—ପ୍ରଭ )

ଶୁଣ ନଳକୂବର ସୁତ ସଙ୍ଗେ ମୋଦରେ
ଜଟିଳା ପ୍ରବେଶ ହେଲି ଯଶୋଦାଙ୍କ ପୁରେ । ପଦ ।

ମେଲାଣି ହୋଇ ରାଧାଦି ସଖୀଙ୍କ ସଙ୍ଗତରେ
ପେଟି ସହିତ ପ୍ରବେଶ ହେଲି ନିଜ ନଗରେ । ୧ ।

ଅଭିମନ୍ୟୁ ବୋଲେ ରଖ ଏ ପେଟି ରାଧା ଘରେ
ପ୍ରଭାତେ ଦେଖିବା ଏବେ ଯିବି ଗୋଷ୍ଠକୁ ଖରେ । ୨ ।

ଜଟିଳା କନ୍ଦୁଣି ଦେଇ ସର୍ବ କକ୍ଷେ ମୋଦରେ
ଶୟନ କଲି ବାହାର ଚତ୍ୱର ଅଳିନ୍ଦରେ । ୩ ।

ଲଳିତାକୁ ରୁନ୍ଧି ରାଧା ରଖିଲେ ହୃଦୟରେ
ଭଣିଲେ କଣୋବଚନ୍ଦ୍ର ରାଜେନ୍ଦ୍ର ଏ ରସରେ । ୪ ।

ରାଧା—

( ରାଗ—ଫିଲୁଆ, ତାଳ—ଏକ )

( ତୋର ଦେଖାନ୍ କଶୋଶ୍ୱ—ପ୍ରଭ )

ଥରେ ଦେଖିବା ସଙ୍ଗିନୀ
କସ ଦେଇଛନ୍ତି ବ୍ରଜରାଜ-ହୃଦ-ବନୋଦନୀ । ପଦ ।

ନାନା ପ୍ରକାରେ ସୁଚୀର ନବରତ୍ନ ଅଳଙ୍କାର
ଆଣୁଥିଲେ ଦାସୀଏ କେତେ
ଶୃଙ୍ଗାରମାନଙ୍କେ ଘେନ । ୧ ।

ଆହା ସେ ମହାରାଣୀର ଗିର କେଡ଼େ ସୁମଧୁର
ଶୁଣି ତାଙ୍କ ବଶ ନୋହି
ରହିବ କେଉଁ କାମିନୀ । ୨ ।

କେଡ଼େ ଶ୍ରଦ୍ଧା ହେଲେ ମୋତେ ଦେଖିବା କ୍ଷଣି ସେ ସତେ
ଭାବେ ମନେ ପୂର୍ବଜନ୍ମେ
ହୋଇଥିଲେ ମୋ ଜନନୀ । ୩ ।

ଶୁଣି ଲଳିତା ହସିତେ ପେଟିକି ଫେଡ଼ୁଁ ତ୍ୱରତେ
ଦଶିଲେ କୃଷ୍ଣ ରାଜେନ୍ଦ୍ର
ଭଣେ ତାଙ୍କ ପଦ ଗୁଣି । ୪ ।

କୃଷ୍ଣ—

(ରାଗ—ସବେରୀ, ତାଳ—ଏକତାଳି)

(ବସ୍ତ୍ରନାମେ ନା ଯାଓରେ—ପ୍ରଭ)

ତୋଷ କର ମୋ ମନରେ ଜୀବଧନ
ଶମ୍ବରପର ପ୍ରଖର
ଶରଘାତେ ହୋଇଛି ଦୀନ । ପଦ ।

ଶରଦ ସୁଧା ମୟୂଖ ସ୍ମିତ ସୁନ୍ଦର ଶ୍ରୀମୁଖ
ଟେକ ଟେକ ରେ ମୋ ଦୁଃଖ-
ଖଣ୍ଡନା ହୃଦୟେ ଦେନ ମୋ ନବେଦନ । ୧ ।

ସମଧୁ ସର ଶାକର ମଧୁରସାରୁ ମଧୁର
ଗିରକୁ ପ୍ରକାଶ କର
ମୁହିଁ ତୋ ଗୃକର ନୁହେ ତ ପରଜନ । ୨ ।

ତୋ ଗୃରୁ ରୂପ ଲବଣ୍ୟ ସରସୀରେ ମୋ ନୟନ-
ମୀନ ସରଗେ ମଜ୍ଜନ
ହୋଇଚ୍ଛି ଲଭିଲ୍ ବନ୍ଦୁ ତୋ ଦରଶନ । ୩ ।

ଆସରେ ମଧୁମହ୍ୱଳା ମଞ୍ଜୁଳ ଚମ୍ପକମାଳା
କର ମୋ ଉରେଙ୍ଗେ ଖେଳା
ମଦନର ମଦ କର ବାରେ ମର୍ଦ୍ଦନ । ୪ ।

ରଧା ଆଶ୍ଚର୍ଯ୍ୟ ନପାରେ ରହୁଁ ଲଳତା ସାଦରେ
ଭଣିଲେ ପ୍ରମୋଦଭରେ
ଶ୍ରୀ କଶୋରଚନ୍ଦ୍ର କଲେ କୃଷ୍ଣଙ୍କୁ ଧାନ । ୫ ।

ଲଳତା—

(ରଗ—କାଫୀ, ତାଲ—ଏକ)

(ହେ ନୂଆ କଳାବଣ୍ଡ ହୃଦୟ—ପ୍ରତ)

ନ ରହ ପ୍ରିୟସହୀ ଲଜେ ମୁଖ ଢ଼ାଳ । ପଦ ।

ବ୍ରଜେନ୍ଦ୍ର ପ୍ରିୟ ତନୁଜ
ନାଗରରଜ,
ବଜେ କରଛନ୍ତ ଆଜ ତୋ ଦର୍ଶନ ଭଳ । ୧ ।

ତତେ ଏ ଦେଖିଲ୍ ଜନୁ
ପାପୀ ଅଛନ୍ତୁ
ଦେଲ୍‌ନି ଏହାଙ୍କ ତନୁ    ଶରାନଳେ ଜାଳି । ୨ ।

ବଶ ତୋ ପ୍ରଣୟ ରସେ
ହୋଇ ହରଷେ
ଜପନ୍ତି ଏ ଅହର୍ନିଶେ    ତୋର ନାମାବଳୀ । ୩ ।

କର ଗୋ ବେଗେ ସଂଖୋଳା
ନକର ହେଳା
ନଖିଲ ଚତୁରା ବାଳା    ମସ୍ତକ ନଆଳି । ୪ ।

ରାଧିକା ସଜନୀ ଗିରେ
ଭଣିଲେ ଧୀରେ
ରାଜେନ୍ଦ୍ର କଲେ ଶ୍ରୀକୃଷ୍ଣ    ପାଦେ ନଉଁଛୁଳି । ୫ ।

ରାଧା—

(ରାଗ—ମୁଖାରୀ, ତାଳ—ଏକ)

(ଜାଣିଲି ନରେଖି ତୋହର ରୂପ—ପ୍ରଭୃ)

ବୁଝିଲି ଭଲେ ମୁଁ ତୋହର ଛଳ
ସଖି ଆସେ ସତେ ତୋତେ କେତେ କହିବା ବେଳ । ପଦ ।

କୁଳଟାବର୍ଗ    ସଞ୍ଚାର ମାର୍ଗ
ମଧୁକୁ ଜାଣି ଜାଣି ଦେଉ ମତେ ପେଲ । ୧ ।

ଏ କଥା କେତେ    ଜନୁ ଗୋ ସତେ
କହ ତୋର କପଟ ହୃଦେ ଥିଲୁ ଭଳ । ୨ ।

ତୁହ୍ମ ମୋ ପ୍ରିୟ ପ୍ରାଣ ଦ୍ୱିତୀୟ
ଦେବ ମୁଁ ଆଉ ତତେ ଭର୍ତ୍ସନା କ ବୋଲ ।୩।
ଶ୍ରୀମତୀ ବାଣୀ ଲଳିତା ଶୁଣି
ଭଣେ ରାଜେନ୍ଦ୍ର ଧାଏ କୃଷ୍ଣ ପଦ ଧୂଳି । ୪ ।

ଲଳିତା—

(ରାଗ—ଭୈରବୀ, ତାଳ—ଏକତାଳି)

(ଆଲୋ ଅଇଲ ଅଳି—ପ୍ରଭୃ)

ଆରେ ସରସିଜମୁଖି ମନୋଜ କେଳି ଲାଳସି । ପଦ ।

ଅମୂଲ୍ୟ ମନ ଚିନ୍ତା ରତନ କରେ କିବେଣି
ସମ୍ପୁଟେ ଅଛି ଆଗ୍ରହ ଚିତ୍ତି
ଯୁକ୍ତ କ ମଧୁରହାସି । ୧ ।

ଲୋକ ନିପୁଣ ବଦାନ୍ୟ ପଣ ଗୁଣ ପ୍ରକାଶି
ତନୁ ଦାନରେ ଲୁବ୍ଧ ଧନ ରେ
କୃପଣ ହବେ ଲାଳସୀ । ୨ ।

ଆପ୍ରାସୀ କେତେ ହେଲେକି ସତେ କୁଞ୍ଜବିଳାସୀ
ପ୍ରବଳ କୃପା ନିଧାନ ସପା
ଚତୁର୍ଦ୍ଦଶ ବରକାଶି । ୩ ।

ତୋ ପୁଣ୍ୟ ବାର ନର ଆକାର ଧରି ସୁକେଶି
ଅଛନ୍ତି ଆଗେ ନ ତେଜ ରାଗେ
ରାଜେନ୍ଦ୍ର ନମେ ଭରସି । ୪ ।

ଗାହାକ —

(ରାଗ—କଲ୍ୟାଣୀ, ତାଳ—ରୂପକ)

(କେଳି ମୁରଲୀ ଗୃହାଁ କି ମଧୁରେ ଖେଳେ—ପ୍ରଭୃ)

ଶୁଣ କନ୍ଦର ଲଳିତା ବଚନେ
ରାଧା ସ୍ୱୀକାର ଜାଣି ମୋଦେ ମନେ । ୧ ।
ଛାଡ଼ି ରାଧାଙ୍କୁ ସପ୍ରଣୟ ଗିରେ
ପଡ଼ୁଥିଲେ ସେ କୃଷ୍ଣ ସେହିଠାରେ । ୨ ।
ସାରିଲେ ଦୁହେଁ ମୋଦେ ହାସ୍ୟବସ୍ଥ
ପ୍ରଦୀପ ମ୍ଳାନ ହେବା କୃଷ୍ଣ ହେରି । ୩ ।
ତେଜି ତଳପ ସୁମଧୁର ଗିରେ
ରାଧାଙ୍କୁ ଛାଡ଼ି ଗମିଲେ ସ୍ୱପୁରେ । ୪ ।
ସଖା ସହିତେ ବୃନ୍ଦାବନ ରଙ୍ଗେ
ବିଜେ କରନ୍ତେ ଧେନୁଗଣ ସଙ୍ଗେ । ୫ ।
ଚନ୍ଦ୍ରାବଳୀର ନୂପୁର ନିସ୍ୱନ
ଶୁଣିଲେ ଭଣେ ରାଜ ମଘବାନ । ୬ ।

କୃଷ୍ଣ—

(ରାଗ—ଫିଲୁଆ, ତାଳ—ଏକ)

(ଭ୍ରମିଲ ଭ୍ରମିଲେ ମୁଖେ କି ବାଦେରେ ସାଯ୍ୟାଁ—ପ୍ରଭୃ)

ଚନ୍ଦ୍ରାବଳୀ ଆସେକି ଆଜ ହେ ମିତ
ଗୌରୀ ପୂଜ । ପଦ ।
ନବ ଉପକାନନେ ଶୁଭେ କି ତାନେ
କନକ ମଞ୍ଜୀର ସ୍ୱନ ହେ ମିତ । ୧ ।

ଦୁର୍ବିଷାତ କାମର ମୌର୍ବ୍ୟ ଟଙ୍କାର
ପଗ୍ଏ ହୋଏ ପ୍ରଶାନ୍ତ ହେ ମିତ । ୨ ।

ଜଣି ହଂସକୂଜତ କରେ ଆନନ୍ଦତ
ଅତ ମୋ ଶ୍ରବଣ ବେନ ହେ ମିତ । ୩ ।

ବଜାଇବ ମୁରଲି ମୋ ରଙ୍କ ସଙ୍ଗାଳି
ମିଳବ ଏକ୍ଷଣି ପାଶେ ହେ ମିତ । ୪ ।

କୃଷ୍ଣ ବଜାଉ ବଂଶୀ ସଖୀ ଗ୍ରଟେଷ ହସି
ଗ୍ରଷେ ଗ୍ରଜେନ୍ଦ୍ର ଏ ରସେ ହେ ମିତ । ୫ ।

ମଧୁମଙ୍ଗଳ—

(ଗ୍ରଗ—ଶଙ୍କର୍ଭରଣ, ତାଳ—ଝମ୍ପ୍)

(ଗ୍ରବ୍ କାମୁର୍ ନମୁନୁ—ପ୍ରତ)

ଆହେ ମୋହନ ବଂଶୀ ବାଦନ
ଯୋଗରୁ ଯେନ । ପଦ ।

ଶୁଷ୍କ ଶାଖିବ୍ରାତ ହେଲେ ପଲ୍ଲବତ
କ ଆଶ୍ଚର୍ଯ୍ୟ ସ୍ଥଗିତ
ରବନନ୍ଦନା ବନ । ୧ ।

ଗୃଙ୍ଗି ଏ ରସାଳ ମୁକୁଳ କୋକଳ
କୂଳ ବରଜ ଖେଳ
ଚକତେ ହେଲେ ମୌନ । ୨ ।

ଦେଖ ମୃଗଗଣ ଅର୍ଦ୍ଧଲୀଢ଼ ତୃଣ
ଗ୍ରାସ ତେଜ ଶୁଣନ୍ତ
ଉଠାଇ ବେନ କର୍ଣ୍ଣ । ୩ ।

ଆହା ଏ ଗୋବର୍ଦ୍ଧନ ଶୃଙ୍ଗ ଶୈଳମାନ
ଦ୍ରବଭାବେ ବହନ୍ତ
ନିର୍ଝରଣୀ ସମାନ । ୪ ।

ଶୁଣି ଏ ମୁରଲୀ ଧନ୍ୟ ଚନ୍ଦ୍ରାବଳୀ
ଭାଷେ ସଖୀଙ୍କ ଭଣେ
ରାଜ ପାକଶାସନ । ୫ ।

ଚନ୍ଦ୍ରାବଳୀ—

(ରାଗ—ଭୈରବୀ, ତାଳ—ରୂପ୍)

(ଆରେ ସହ୍ନ, କେତେ ମନ୍ଦପଣ—ପ୍ରଭୃ)

ପ୍ରିୟ ଆଳି
ଶୁଭୁଛି ମୁରଲୀ କାକଳି
ଶୁଣି ଏ ନିନଦ କମ୍ପୁଛି ମୋ ହୃଦ
ଆଉ ନ ପାରେ ସମ୍ଭାଳି । ପଦ ।

ହେଲା କେତେ ଦିନ ମଦନମୋହନ
ପ୍ରସନ୍ନ ମୁଖ ନଳିନ
ଦେଖି ନାହିଁ ସଖି ଗ୍ଲାନ ଗୋ ଏକାକୀ
ହୋଇଥିବେ ଚନ୍ଦ୍ରାନନ । ୧ ।

ମୋର ନାମ ଧରି ବଂଶୀରେ ଶ୍ରୀହରି
ଡାକନ୍ତି ଶୁଣ କପରି
ନକର ଗୋ ହେଳା ଜାଣିଲେ କହ୍ନେଲା
ଦେଲେ ଦେଉ ପଞ୍ଚେ ମାରି । ୨ ।

ଅଛୁ ମାନସରେ ଏ ମଧୁ ମାସରେ
କୃଷ୍ଣ ସଙ୍ଗେ ରସକେଳୀ
କରିବ ତୋଷରେ ମୋହନ ପାଶରେ
ଏ ପ୍ରସଙ୍ଗ ଦେବୁ ଝାଲ । ୩ ।

କା ଆଖିରେ ଅବା ସେ ସାମାନ୍ୟ ଯୁବା
ମୋ ହୃଦର ଗଣ୍ଠି ଧନ
ତାହା ବାହାହୁଡ଼ା ରସାନନ୍ଦ ଛଡ଼ା
ସ୍ୱର୍ଗସୁଖେ ନାହିଁ ମନ । ୪ ।

ବନେ ତା ପଛରେ ବୁଲ ବୁଲ ଶିରେ
ବହିବ ପଦ କଠାଉ
ରାଜଇନ୍ଦ୍ର ଭାଷେ ଏଥୁ ବଳ ବଶେ
କେଉଁ ଭାଗ୍ୟ ଅଛୁ ଆଉ । ୫ ।

ପଦ୍ମା—

(ରାଗ—ସରଟା, ତାଳ—ଏକ)

(ଥରେ ଗୃହିଁ। ରେ ସଙ୍ଗିନ—ଛନ୍ଦ)

ବେଗେ ଆସ ରେ ସଜନ
ମଞ୍ଜୁଳ ବଞ୍ଜୁଳ ବନୁ ପ୍ରସରେ ମୁରଲୀ ଧ୍ୱନି । ପଦ ।

ମହୀମହିଳାମଣି ଶୁହିଁ ତୋର ସରଣୀ
ଜଗିଛନ୍ତ ଏକାକୀ ବେଣୁପାଣି । ୧ ।

ଗୁଢ଼ ମନ୍ଥର ଗତ ଆସ ଗୋ ଜାଣ ମୋହ-
ଦଶନା କରିଲାକୁ ଲାଗେ ଭ୍ରାନ୍ତ । ୨ ।

ବନମାଳ ସୌରଭେ ଭ୍ରମରେ ତା ପ୍ରଲୋଭେ
ଗମନ୍ତି ଏହି ସଙ୍ଗେ ଶତକ୍ଷୋଭେ । ୩ ।

କୃଷ୍ଣଙ୍କୁ ଦେଖି ତୋଷେ ଲାଜ ରହୁ ସେ ଘୋଷେ
ମଜ୍ଜେ ରାଜେନ୍ଦ୍ର ହୃଦ କୃଷ୍ଣ ରସେ । ୪ ।

କୃଷ୍ଣ—

( ରାଗ—ଭୈରବୀ, ତାଳ—ରୂପକ )

( ଗଲ ତୋ ଅନୁରାଗ ଜଣା—ପ୍ରଭୃ )

କାହିଁକି ମୋରେ ଲାଜ ଆଜ ଆ ମୋ ବନ୍ଧୁ ଆ ରେ । ପଦ ।

ବାରଣଗତି ମୋର ପରାଣ
ଆକୁଳ ଅତି ତୃଷାରେ ଜାଣ
ପୋକାଅ ରେ ବର- ବରନା ଅଧର
ସୁଧା ରସରୁ ଧାରେ । ୧ ।

ଡାକମଧା ମୋ ପ୍ରାଣ ସଙ୍ଗାଳ
ଚାକଛି ତୋର ଦର୍ଶନ ଫଳ
ବେଢ଼ାଅ ମୋ ଗଳା ବାଳା ଚମ୍ପାମାଳା
ଘୃଣ୍ଟିତର ବାହା ରେ । ୨ ।

ମାର ହଜାଇ ଦିଏ ବିବେକ
ଦେକ ଶ୍ରୀମୁଖ ଗୁଚୁ ମୋ ଦୁଃଖ
ଆଜ ମୁଁ ପ୍ରଲମ୍ବ- ଶକ୍ତିର ବିଲମ୍ବ
ଲେଶ ସହି ନ ପାରେ । ୩ ।

କୃଷ୍ଣଙ୍କୁ ଚନ୍ଦ୍ରାବଳୀ ସେକାଳେ
ପୁଷ୍ପମାଳାକୁ ଦେଇ ରଖିଲେ
ଶ୍ରୀକିଶୋରଚନ୍ଦ୍ର ରାଜ ପୁରନ୍ଦର
କୃଷ୍ଣପଦେ ଜୁହାରେ । ୪ ।

ଚନ୍ଦ୍ରାବଳୀ—

( ରାଗ—ଜଂଝୋଟି, ତାଳ—ଆଦି )

( ଇନ୍ଦୁମୁଖୀ ଓ୍ୱାନା କି ମାନସାନ୍ଦୁ ଲେଦା ଏ—ପ୍ରଭୃ )

ହେ ନିଖିଳ-ନାଗରୀ-ମନ-ମୋହନ-ମାର
ଅଭିନବ କିଶୋର । ପଦ ।

କାହିଁକି ସଜ ନୀରଜ ମୁଖେ
କ୍ଷୀଣ ବାସର
ଚନ୍ଦ୍ର ସୁଷମା କରୁଛି ଜମା ଶ୍ୟାମସୁନ୍ଦର । ୧ ।
ସ୍ଥୂଳ ମର୍କତ ସ୍ତମ୍ଭ ଯୁଗଳ
ନିଭ ଶ୍ରୀକର
ଦିଶଇ ଆହା ଶୁଷ୍କ ମୃଣାଳ ବଲ୍ଲୀ ପ୍ରକାର । ୨ ।
ଗୋପରେ କେଉଁ ସାରସାକ୍ଷୀର
ନେତ୍ରାନ୍ତ ଶର
ବାଜି ହୃଦୟ ମଧ୍ୟରେ ହେଲା କି ଆରପାର । ୩ ।
ପ୍ରସର ଦୁଃଖଭରେ ପ୍ରଖର
ଶ୍ୱାସ ସମୀର
ବାଜି ଝାଉଁଲା ଯାଉଛି ଉର ପଙ୍କଜ ହାର । ୪ ।
ଶୁଣି ଶ୍ରୀହରି ରଖିଲେ ତାଙ୍କୁ
ହୋଇ କାତର
ଭଣେ ରାଜେନ୍ଦ୍ର କୃଷ୍ଣ ପ୍ରପଦେ କରି ଜୁହାର । ୫ ।

କୃଷ୍ଣ—

( ରାଗ—କଲ୍ୟାଣୀ, ତାଳ—ଏକ )

( ଉତ୍ତମ ସ୍ନେହ ଯହିଁ—ପ୍ରଭୃତି )

କାହିଁକି ଏହିପରି କହୁ ଗୋରି । ପଦ ।

ନାହିଁ ତୋହ ବନା ସାହା କେ ନବୀନା
କହେ ନୟମ କରି । ୧ ।

ମୋ ସ୍ନେହ ତୋ ଠାରେ ଯେଉଁ ପରକାରେ
ଜାଣେ ତୋ ସହଚରୀ । ୨ ।

ନବମାଡ ଅଙ୍ଗୀ କାହୁଁ ଏହି ଭଙ୍ଗୀ
ଶିଖିଲୁ ସୁକୁମାରୀ । ୩ ।

ଏପରି ବଚନ କଲେ ତୁ ରଚନ
ଯିବ ଜୀବ ବାହାରି । ୪ ।

ଶୁଣି ସଖୀ ହସି କହିଲେ ଆଶ୍ୱାସି
ଭଣେ ରାଜ-ବଳାରି । ୫ ।

ପଦ୍ମା—

(ରାଗ—ଶଙ୍କରାଭରଣ, ତାଳ—ଝୁପ୍)

(ଏହି କୁଞ୍ଜେ ଥିଲେ ପରା—ପ୍ରଭୃତି)

ଧନ ହେ ମନମୋହନ
ଜଣାଉଛୁ ଯେନ ମୋର ଏ ନବେଦନ । ପଦ ।

କହିଦେଲ ସିନା ହସି କରାଇବାକୁ ଛନ୍ଦ
ଏହି କଥାଟାକୁ କେତେ ପକାଅ ଆନ । ୧ ।

ସାଜ ସୁବେଶକୁ ଆଜ ହେ ରାଜୀବନୟନ
ବଳାଇଛୁ ଆମ୍ଭ ସଖୀ ରାସରେ ମନ । ୨ ।

ପୂରାଅ ଏହା ସଂକଳ୍ପ ରଚି ରାସ ବିଧାନ
ତୁମ୍ଭ ପ୍ରେମଧନରେ ତ ଏ କିଣା ଜନ । ୩ ।

ଶୁଣି ଶ୍ରୀହରି ଭାଷିଲେ ସପ୍ରଣୟ ବଚନ
ରାଜଇନ୍ଦ୍ର କରେ କୃଷ୍ଣ ପ୍ରପଦ ଧ୍ୟାନ । ୪ ।

କୃଷ୍ଣ—

(ରାଗ—ଶଙ୍କରାଭରଣ, ତାଳ—ରୂପ୍)

( ଚନ୍ଦ୍ରବଦନା ମୋ ଅଙ୍କମଣ୍ଡନା—ପ୍ରଭୃ )

ମହୀମଣ୍ଡନା ମୋ ଦୁଃଖଖଣ୍ଡନା ॥ ପଦ ॥

ରେ କାମକଳା କେଳିକୁଶଳା
ମୋ ଗଳାମାଳା ଅଛୁ ତୁ ସିନା ।୧।
ସ୍ୱୀକାର ତାହା କଲ୍ ସୁଦେହା
ଥିଲ୍ ମୋ ଯାହା ମନ କାମନା ।୨।
ଆଜ ତୋହର ରାଜରେ ମାର
ପାଜ ଗରବ କରିବ ଚୂନା ।୩।
ମୋ ଶ୍ରୁତିଯୁଗ ମୋଦ ଲଭିବ
ବାଜିବା ଶୁଣି ମଣି ରସନା ।୪।
ସଙ୍ଗେ ସୁନ୍ଦରୀ ସଖୀଙ୍କି ଧରି
ଆସିବୁ କରୀ- ରାଜ ଗମନା ।୫।
କିଶୋରଚନ୍ଦ୍ର ଶ୍ରୀକୃଷ୍ଣଚନ୍ଦ୍ର
ପଦେ ନିରନ୍ତ କରେ ବନ୍ଦନା ।୬।

ଗାନ୍ଧାକ—

(ରାଗ—ଶଙ୍କରାଭରଣ, ତାଳ—ଝମ୍ପ)

(ଆଜ ସେ ନାଗରୀ ସାର ମଥାମଣି—ପ୍ରଭ)

ଯେବେ ହେ କନ୍ଦର ଶୁଣି ବେଣୁ ଗୀତ
ସବେ ଆସିବାକୁ କଲେ ସଙ୍କେତ ।ପଦ ।

ଏକାଳେ କରାଳା ହୋଇ ଉପସ୍ଥିତ
ଲୁଚି ପଳାଇଲେ ସବେ ଭ୍ରମରତ ।୧।

ଏ ଅନ୍ତେ ମିହିର କରଣ ସଂଘାତ
ଚୁମ୍ବିଲା କ୍ରମରେ ଅସ୍ତପର୍ବତ ।୨।

ଦେଖି ମୋଦେ ହରି ସାରି ନକ୍ତଂକୃତ୍ୟ
ରତ୍ନାଲଙ୍କାରରେ ହୋଇଲେ ଭୂଷିତ ।୩।

ହୃଦୟ ଉତ୍କଣ୍ଠା ପ୍ରମୋଦେ ପୂରିତ
ପୂର୍ବଦିଗ ପଟେ ହୋଇ ଦୃଷ୍ଟିପାତ ।୪।

ପୀୟୂଷମୟୂଖ ହୁଅନ୍ତେ ଉଦିତ
ଭଣିଲେ ରାଜେନ୍ଦ୍ର ହୋଇ ମୁଦିତ ।୫।

କୃଷ୍ଣ—

(ରାଗ—ସେହେନା, ତାଳ—ରୂପକ)

(କୃଷ୍ଣ ବୋଲିବାର ଯେଉଁ ଦୁ'ଅକ୍ଷର—ପ୍ରଭ)

ଆଜ ମୋ ମାନସ କରେ କି ହରଷ
ଆହା ଏ ଔଷଧୀଶ ଉଦୟେ ପୀୟୂଷ
କରନ୍ତୁ ପ୍ରକାଶ
କରି ଧବଳିତ କଲା ବନଦେଶ । ପଦ ।

ଗଗନ କାନନ କେଶରୀ
ପ୍ରାଚୀ ପର୍ବତ ଗୁହାରୁ ବାହାରି
ଗାଢ଼ ତମ କରି- ବରକୁ ବଦାରି
ଦେଲା ଗୃହୁଁ ଗୃହୁଁ ଶତ୍ରେ ବନ୍ଧ ରୋଷ । ୧ ।

ଆପଣା ବଲ୍ଲଭ ଉଦୟ
ଭାବ ଗୃହୁଁ କୁମୁଦନୀ ସମୂହ
ଭୃଙ୍ଗରବ ଛଳେ ହୁଳହୁଳି ଦେଲେ
ପରମ ଆନନ୍ଦେ ମୁଖେ ଧରି ହାସ । ୨ ।

ଏ°ତ ବୋଲି ବଂଶୀ ଅଧରେ
ଧରି ବଜାଇଲେ ଅତି ସୁସ୍ୱରେ
ଶୁଣି ଶୈବ୍ୟା ଭାଷେ ଚନ୍ଦ୍ରାବଳୀ ପାଶେ
ରାଜେନ୍ଦ୍ର ଶ୍ରୀକୃଷ୍ଣ ପଦେ ନମେ ତୋଷେ । ୩ ।

ଶୈବ୍ୟା—

(ରାଗ—ଜଂଝୋଟି, ତାଳ—ଏକ)

(ନାହିଁ ମୋର ଦୋଷ ଲେଶ—ପ୍ରଭି)

ବେଗରେ ସାରି ସୁବେଶ ରେ
ପ୍ରାଣ ସଙ୍ଗିନୀ । ପଦ ।

ସଶଯ୍ୟାକୁ ଛାଡ଼ ମନୁ କେଳିକଦମ୍ବ କାନନୁ
ଶୁଭିଲାଣି ବେଣୁଘୋଷ ରେ । ୧ ।

ରେ କାମକେଳୀ ରସିକା ବିପିନରେ ହୋଇ ଏକା
ଥିବେ ତୋ ପ୍ରାଣଈଶ ରେ । ୨ ।

ଆସନ୍ତୁ ଗୋ ସବୁ ଆଳି ଆଜ କୃଷ୍ଣ ସଙ୍ଗେ ମିଳି
ଆରମ୍ଭିବୁ ପର୍ବ ରାସ ରେ । ୩ ।

ଶୁଣି ଚନ୍ଦ୍ରାବଳୀ ପ୍ରେମେ ସଖୀଙ୍କି ଭଷିଲେ ଶ୍ୟାମେ
ରାଜେନ୍ଦ୍ର ନମେ ଅନଶରେ । ୪ ।

ଚନ୍ଦ୍ରାବଳୀ—

(ରାଗ—କାମୋଦୀ, ତାଳ—ରୂପ୍)

(ରେ ଶରଦପୂର୍ଣ୍ଣଚନ୍ଦ୍ରମାମୁଖି—ପ୍ରଭ)

ଗୋ ସକଳ ପ୍ରିୟ ସଙ୍ଗିଣୀମାନେ
ସଜଣୀମାନେ ଆସ ବହନେ । ପଦ ।

ସୁରୂଣ ସିନ୍ଧୁ ମୋ ପ୍ରାଣବନ୍ଧୁ
ଏକା ହୋଇ ଥିବେ କୁଞ୍ଜ ସଦନେ । ୧ ।

ଯାମୁ ରଜଣୀ ବଳଗଲାଣି
ଯିବା କଥା ପଡ଼ୁ ନାହିଁକ ମନେ । ୨ ।

ଶୁଣି ହରଷେ ଶ୍ୟାମଳା ଭାଷେ
ଶ୍ରୀ କିଶୋରଚନ୍ଦ୍ର ନମେ ଶ୍ରୀକୃଷ୍ଣେ । ୩ ।

ଶ୍ୟାମଳା—

(ରାଗ—ଶଙ୍କରାଭରଣ, ତାଳ—ରୂପ୍)

(ଛାଡ଼ ଗୋ ଏ ହରମ ପଦ୍ମା—ପ୍ରଭ)

ଚାଲ ଗୋ ଚାଲ ପରବ ଚନ୍ଦ୍ରାନନୀ
ସବୁ ସଖୀମାନେ ତ ଆସିଲେଣି । ପଦ ।

ବରଜ ପାଟଣା ପ୍ରଭୃ ଘାଟ ହେଲଣି ଆସି ସଜନୀ ନିକଟ
ନଟ ପଟଳ ମୁକୁଟ ଯହିଁ ରହିଥିବେ ବାଟ
ବିଳମ୍ବ ଅବଲମ୍ବେ ଅବଧାନୀ
ନୃହ ବହୁତ ହେଲଣି ରଜନୀ । ୧ ।

କର ଏହି କାଳେ ଅନୁକୂଳ ବହୁଛି ସୁଗନ୍ଧ ମନ୍ଦାନିଳ
ନବପଲ୍ଲବ କୋମଳ ତୋର ଚରଣଯୁଗଳ
ବଳା ଧୀରେ ନ ଶୁଭୁ କଳାଧ୍ୱନି
ବାନ୍ଧବେ ଜାଣିଲେ ହେବୁ ଦୁଃଖିନୀ । ୨ ।

ପଦ୍ମା କରେ ଦିଅ କରଭର ଭଦ୍ରା ପହଣ୍ଡ ମଣୋଡ଼ି ଆଗର
ପରିବାରିଏ ହାଜର ଅଛନ୍ତି ତ ବିଜେ କର
ସର୍ବେ ଗମିଲେ ସେକାଳେ ବୃନ୍ଦାବନେ
ସଜେନ୍ଦ୍ର କୃଷ୍ଣେ ନମିଲେ ସୁମନେ । ୩ ।

ଗାହାକ—

(ରାଗ—ଶଙ୍କରାଭରଣ, ତାଳ—ଏକ)

(ଲୁଚେ କି ନବୀନା ରୁଚିର ଗୁଣ ବାସନା—ପ୍ରଭୃ)

ହେ ନଳକୂବର
ଶୁଣ ହେ ଚରିତ ସାର । ପଦ ।

ପ୍ରମୋଦେ ସକଳେ ହାସ କୁତୂହଳେ
ଯାଇ ଭେଟିଲେ ବହନେ କାନନେ ଶ୍ୟାମସୁନ୍ଦର । ୧ ।

କୋଟିଏ କାମର ଛବି ତିରସ୍କାର
ରୂପକୁ ସାଦରେ ଯହିଁ ଦୂରରୁ ଗୋପୀ ନିକର । ୨ ।

ଧାଇଁଯାଇ ତୋଷେ ହୁଳହୁଳ ଘୋଷେ
ପୂଜିଲେ କୃଷ୍ଣପୟର ଦେଇ ପ୍ରେମ ଉପହାର । ୩ ।
ଶ୍ରୀହରି ସେକାଳେ ହରଷେ ଭାଷିଲେ
କିଶୋରଚନ୍ଦ୍ର ରାଜେନ୍ଦ୍ର କରେ କୃଷ୍ଣଙ୍କୁ ଜୁହାର । ୪ ।

କୃଷ୍ଣ—

(ରାଗ—ଶଙ୍କରାଭରଣ, ତାଳ—ଏକ)

(କୁନ୍ଦହସନା ଆସି ସେ ନବୀନା—ପ୍ରଭୃତି)

ରାସରସିକାମାନେ ଆସ ଆସ
କାଣରୁଚ ହାସ ପରକାଶ କର ଲପନେ । ପଦ ।

ନାଶିବାକୁ ମୋ ଦୁଃଖ ଆସିଲକି ଗୋ ମୁଖ-
ସଦନାମାନେ
ରାସକାଳେ ହୋଇ ବିପିନେ । ୧ ।

କୋପୀ ପାପ ମଦନ ତାପେ ମୋ ଅପଘନ
ଜ୍ୱଳେ କର ଶୀତଳ
ନବଡ଼ ଆଲିଙ୍ଗନେ । ୨ ।

ମୋ ନୟନ ସଙ୍ଗାଳି ଆସ ରେ ଚନ୍ଦ୍ରାବଳୀ
ମୋ ଉତ୍ସଙ୍ଗରେ ଖେଳ
ତୃଣୀ କର ଜୀବନେ । ୩ ।

ଶୁଣି ନାରୀ ସକଳେ ଶ୍ରୀହରଙ୍କି ଭାଷିଲେ
କିଶୋରଚନ୍ଦ୍ର ନମେ
କୃଷ୍ଣ ପଦେ ସୁମନେ । ୪ ।

ନାୟିମାନେ—

(ରାଗ—ଶଙ୍କରାଭରଣ, ତାଳ—ଏକ)

(ଶୁଣ୍ଡି ଶୁଣ୍ଡି ରମଣୀ—ପ୍ରଭ)

ଶ୍ୟାମବନ୍ଧୁ କରୁଣାରସସିନ୍ଧୁ ହେ
ଶ୍ରୀମୁଖ ନର୍ଜିତ ପାବଣ ଇନ୍ଦୁ ହେ । ପଦ ।

ଯୁବାବୃନ୍ଦ ଶିରୋମଣି ମଣ୍ଡନ
ବାସବ ଶ୍ୟାମଳ ରତନ ଶୋଭନ
ନଜ ଦାସୀଗଣେ କୃପାକୃତା ଗୁଣ
ପ୍ରକାଶିଲ ଆଜ ରାଜୀବଲୋଚନ । ୧ ।

କାଶୀଶ୍ୱର ଶ୍ରୀପଦ ସେବା ଗବେ
ରସି କ ସୁକୃତ ଅର୍ଜିଥିଲୁଁ ପୂର୍ବେ
ଯାହା ତୁମ୍ଭେ କେଳୀ ମୁରଲୀ ରବେ
ଡାକିଲ ଆମ୍ଭଙ୍କୁ ରାସ ମହୋତ୍ସବେ । ୨ ।

କତ କୋଟି କାମ ରୁଚିର ବେଶ
ଝଲ୍ଲେକ ଆମ୍ଭର ଧୈର୍ଯ୍ୟ ହୁଏ ନାଶ
ନୃତ୍ୟରଙ୍ଗେ ରସି ଆମ୍ଭ ମାନସ
ଭୃତ୍ୟବତ୍ସଳ ହେ ! ବେଗେ କର ସନ୍ତୋଷ ।୩।

କଞ୍ଜ ମଞ୍ଜୁତର ମୃଦୁ ଶ୍ରୀପଦ
ରତନ ମଞ୍ଜୀର ମଧୁର ନନଦ
ଶୁଣି ଶ୍ରୁତି ମତ ଭଜୁ ପ୍ରମୋଦ
ରାଜେନ୍ଦ୍ର ବନ୍ଦିଲେ ନତି କୃଷ୍ଣ ପ୍ରପଦ । ୪ ।

ନାରୀମାନେ—

(ରାଗ—ଶଙ୍କରାଭରଣ, ତାଳ—ଏକ)

(ରୁହାଁ ରୁହାଁ ରମଣୀ—ପ୍ରଭ)

ଶ୍ୟାମବନ୍ଧୁ କରୁଣାରସସିନ୍ଧୁ ହେ
ଶ୍ରୀମୁଖ ନିର୍ଜିତ ପାବଣ ଇନ୍ଦୁ ହେ । ପଦ ।

ଯୁବାବୃନ୍ଦ ଶିରୋମଣି ମଣ୍ଡନ
ବାସବ ଶ୍ୟାମଳ ରଚନ ଶୋଭନ
ନିଜ ଦାସୀଗଣେ କୃପାକୃତା ଗୁଣ
ପ୍ରକାଶିଲ ଆଜ ରାଜୀବଲୋଚନ । ୧ ।

କାଶୀଶ୍ୱର ଶ୍ରୀପଦ ସେବା ଭାବେ
ରସି କି ସୁକୃତ ଅର୍ଜିଥିଲୁଁ ପୂର୍ବେ
ଯାହା ତୁମ୍ଭେ କେଳୀ ମୁରଳୀ ରବେ
ଡାକିଲ ଆମ୍ଭଙ୍କୁ ରାସ ମହୋତ୍ସବେ । ୨ ।

ଜିତ କୋଟି କାମ ରୁଚିର ବେଶ
ବିଲୋକି ଆମ୍ଭର ଧୈର୍ଯ୍ୟ ହୁଏ ନାଶ
ନୃତ୍ୟରଙ୍ଗେ ରସି ଆମ୍ଭ ମାନସ
ଭକ୍ତବତ୍ସଳ ହେ ! ବେଗେ କର ସନ୍ତୋଷ ।୩।

କଞ୍ଜ ମଞ୍ଜୁତର ମୃଦୁ ଶ୍ରୀପଦ
ରତନ ମଞ୍ଜୀର ମଧୁର ନିନାଦ
ଶୁଣି ଶ୍ରୁତି ମତ ଭଜୁ ପ୍ରମୋଦ
ରାଜେନ୍ଦ୍ର ବନ୍ଦିଲେ ନତ କୃଷ୍ଣ ପ୍ରପଦ । ୪ ।

ଗାହାକ—

(ରାଗ—ଅଡଣା, ତାଳ—ଏକ)

(ଚେ।ଶୋଭନ ଲପନେ ମଞ୍ଜୁଳ—ପ୍ରଭ)

ହେ ଧନଦନନ୍ଦନ

ଏ ଅନ୍ତେ କଲେ ରାସବଧାନ । ପଦ ।

ନାରୀଗଣ ମଣ୍ଡଳୀ ମଧ୍ୟରେ ନାଚନ୍ତ ବନମାଳୀ
କେ କରତାଳ ମାରେ
କେ କରେ ମଙ୍ଗଳ ରାଗେ ଗାନ । ୧ ।

କେ ହେଲ୍ ନୃତ୍ୟେ ଭୋଳା ବଜାଏ ପ୍ରମୋଦେ କେ ବେହେଲ୍
କେଉଁ ପିତାର ତାର
ମୃଦୁଲ ଅଙ୍ଗୁଳରେ ଗୂଳନ । ୨ ।

ଖଞ୍ଜଣ୍ ମରଦଳ ଶାରଙ୍ଗି ଗିନ ତାଳ
ତବଲ ବାଜା ବଜାଇ କ୍ଷିନ
ହଜାଇ ନାଚଲେ ଗୋପୀଗଣ । ୩ ।

ମୋହନ ବଂଶୀସ୍ୱନ ପୂରଲ୍ ଚତୁର୍ଦ୍ଦଶ ଭୁବନ
ସିଦ୍ଧ ଗୂରଣ ତିଦଶେ
ନଭେ କଲେ ଲୋକନ । ୪ ।

ଏ ରହସ୍ୟ ତରକ ଲଳତା କହେ ରାଧାଙ୍କୁ ଡାକ
କଶୋରଚନ୍ଦ୍ର କରେ
ସତତ କୃଷ୍ଣପଦ ଶରଣ । ୫ ।

ଲଳିତା—

(ରାଗ—ଶଙ୍କରାଭରଣ, ତାଳ—ରୂପ୍)

(ମନସିଜ ମନମୋହନ ଘନ—ପ୍ରଭୃତି)

ସରସିଜମୁଖି ଯିବା ଗୋ ଦେଖି
ଆସ ବହନ ରେ ସଜନ
ରାସ ବିଧାନେ ବଂଶୀ ନିସ୍ୱନେ
ପୂର୍ଣ୍ଣ ବୃନ୍ଦାବନ ରେ । ପଦ ।

ଭଲ୍ ସେ ନାଗରମଣି କେତେ ଭାବ ଅଛି ଜାଣି
ନଥିବ ତା ପର କରିବାକୁ ଚୋର
ସଖି-ମନ-ଧନ ରେ । ୧ ।

ରାସ ଉତ୍ସବ ନିମନ୍ତେ ନ ଡାକଲେ ବୋଲି ତୋତେ
ଲୋଚନେ ନକର ନନ୍ଦନ ସୁନ୍ଦର
ନେବ ଥନ ଥନ ରେ । ୨ ।

ବୁଝିବା ତାଙ୍କ ମରଜ ଲତାଜାଲେ ଲୁଚି ଆଜ
ରାହାସ ଦେଖିବା ପ୍ରଭାତୁଁ ଆସିବା
ବୁଲି ବନବନ ରେ । ୩ ।

ଲଳିତା ବଚନ ଶୁଣି ରାଧା ଭାଷିଲେ ଏ ବାଣୀ
ଭଣିଲେ ହରସେ
ରାଜଇନ୍ଦ୍ର କୃଷ୍ଣପଦ କରି ଧ୍ୟାନ ରେ । ୪ ।

ରାଧା—

( ରାଗ—ଶଙ୍କରାଭରଣ, ତାଳ—ଝମ୍ପ )

( ଦେଖ ଦେଖ ଏହା ଶାନ୍ତ—ପ୍ରଭୃତି )

ଚାଲ ଚାଲ ପ୍ରାଣସଖୀ
ଦେଖିବା ଯାଇ । ପଦ ।

ରାସ ରସ ରଙ୍ଗିଲା ହୋଇ କେତେ ଛଇଲା
ମୋହନ ମନକୁ ଆଜ ଅଛନ୍ତି ମୋହି । ୧ ।

ଶ୍ୟାମ ଲବ କରୁଣା ଲଭି କେତେ ପ୍ରବୀଣା
ରାସୋତ୍ସବେ ମାତି କମ୍ପାଉଥିବେ ମହୀ । ୨ ।

ଆହା ସେ ସୁଖଭାଗ୍ୟ ଲଭିବାକୁ ମୁଁ ଯୋଗ୍ୟ
ନ ହେଲି ପୂର୍ବେ ତ ସୁକୃତ କରି ନାହିଁ । ୩ ।

ଶୁଣି ଶ୍ରୀମତୀ ଗିର ସଖୀ ନେଇ ସତ୍ୱର
ଦେଖାଏ ରାଜେନ୍ଦ୍ର ଭଣେ କୃଷ୍ଣଙ୍କୁ ଧାଇ । ୪ ।

ଲଳିତା—

( ରାଗ—ସୌରାଷ୍ଟ୍ର, ତାଳ—ଏକ )

( ଶୁଣ ମୋ ବଚନ ସଜନି—ପ୍ରଭୃତି )

ଆହା କି ଶୋଭନ
ସଜନି ଗୋ ହୋ
ନାରୀଗଣ ସଙ୍ଗେ ରଙ୍ଗେ ନୃତ୍ୟ କରନ୍ତି ନନ୍ଦନନ୍ଦନ । ପଦ ।

କରେ ଧରି ବୀଣା କେ ରସପ୍ରବୀଣା
ବଜାଇ କରେ ଗାନ । ୧ ।

କେ ପ୍ରେମେ ବହ୍ୱଳ ହୋଇ ମରଦଳ
ଟିପଇ ଘନ ଘନ । ୨ ।

ଲାଜ ଲାଜ ହୋଇ କୃଷ୍ଣଙ୍କୁ କେ ସଖୀ
ଧଏ ଧୀରେ ଚୁମ୍ବନ । ୩ ।

ଚନ୍ଦ୍ରାବଳୀ ମୋଦେ ମିଶି କୃଷ୍ଣଙ୍କ ଦେ
କରଇ ଆଲିଙ୍ଗନ । ୪ ।

ଦେଖି ରାଧା ରୋଷେ ଭ୍ରଷନ୍ତ ବରଷେ
ବ୍ରଜେନ୍ଦ୍ର ଧାଏ କୃଷ୍ଣ । ୫ ।

ରାଧା—

( ରାଗ—ଶଙ୍କରାଭରଣ, ତାଳ—ରୂପକ )

( ଗୃଲ ଗୃଲ ନନ୍ଦଲାଲ ଜଣାଗଲାନ ତ ଗୃଲ—ପ୍ରଭ )

କଷ ଗୋ ଏ ଦେଖାଇଲୁ ବଷକୁ ତ ଚଖାଇଲୁ
ବାସକୁ ଯିବା ବହନେ ଆସ ସଖୀ । ପଦ ।

ନଶାରେ ବନକୁ ଆସି ଏ ନର୍ଲଜ୍ଜ ରାଟେ ରସି
ଦେଖିବା ସଖିର ଧର୍ମ ନାକ ଏହ୍ୱ
ଏତକ ଗଲାନ ଅଣ୍ଡି ମନ ହୋଉଅଛୁ ଘାଣ୍ଡି
କ ଲଭ ଅଛୁ ଗୋ କହ ଏଥେ ରହ୍ୱ । ୧ ।

କୁଳଟାକୁ ସେ ଲଟାକୁ ଓଟାର କରେ ହଟାକୁ
ସେହ୍ୱ ବଟ-ମୁକୁଟକୁ ହୃଦ ଦେଇ
ପ୍ରାଣ ହାରବା ସହଜ ତାହାଁ ତ ବଳଲ ଲାଜ
କହନୋହ୍ୱବା ସେ ଦୁଃଖେ ଦହ୍ୱ ହୋଇ । ୨ ।

ଶାଶୁ ନଣନ୍ଦ ଗଞ୍ଜଣା ଶେଷକୁ ଶୁଣିବା ପିନା
ଏ ପୋଡ଼ା କପାଳେ ବହି ଥିଲା ଲହି
ଥିଲିକ ଗୋ ମୋ ଦଶାରେ ଭଗାଇ ଉଡ଼ାହସାରେ
ପଡ଼ିବାକୁ ଧିକ ପ୍ରାଣ ଯାଉ ନାହିଁ । ୩ ।

ଏତେ ଏ କପଟୀ ବୋଲି ତଳେ ମୁଁ ଜାଣି ନଥିଲି
ତୁ ହେଲେ ନ କହିଲୁକି ଲାଞ୍ଛ ପାଇ
ଏବେ ଏ ହାଟ ବସାଇ ହଟହଟାରେ ପକାଇ
କି ଲଭ ନେବୁ ମୋ କାନେ କହ ସହି । ୪ ।

କାହାକୁ କହିବି କିସ ସବୁ ମୋ କପାଳ ଦୋଷ
ଘଟିବା କଥା ଅବଶ୍ୟ ଭୋଗେ ଦେହୀ
ଭଣେ ରାଜେନ୍ଦ୍ର ପିରତ ହିମ ତ ଏପରି ସହି
ଦୁଃଖ ଭୋଗି ଶେଷେ ପିନା ସୁଖ ପାଇ । ୫ ।

ଗାହାକ—

( ରାଗ—କଲ୍ୟାଣୀ, ତାଳ—ରୂପକ )

( କେଳୀ ମୁରଲୀ ଶୁଣିଁ କି ମଧୁରେ—ପ୍ରଭୃତି )

ଶୁଣ କହୁଛି ରାଧା ନିଜ ପୁରେ
ଫେରିବା ଶୁଣିଁ ବୃନ୍ଦା ନେହାନ୍ତରେ । ପଦ ।

ଠାର ହରିକ କହିବା ତକ୍ଷଣେ
ଅନ୍ତର୍ଦ୍ଧାନ ସେ ହୋଇଲେ ବିମନେ । ୧ ।

କୃଷ୍ଣ ନ ଦେଖି ବ୍ରଜବାଳା ଜନେ
ଚକିତ ହୋଇ ଅତି ଦୁଃଖ ମନେ । ୨ ।

ବସନ୍ତ ରହାସ

ଖୋଜିଲେ ବୁଲି ବୁଲି ବନଦେଶ
ଏକାଳେ ନିଶା ଆସି ହେଲା ଶେଷ । ୩ ।

ଦୁଃଖେ ଗମିଲେ ସେ ଯାହା ଭୁବନେ
ଏଣେ ଶ୍ରୀହରି ରାଧା ସନ୍ନିଧାନେ । ୪ ।

ପ୍ରବେଶ କରି ଭାଷିଲେ ବିନୟେ
ରାଜେନ୍ଦ୍ର ଦେବ କୃଷ୍ଣ ପଦ ଧ୍ୟାଏ । ୫ ।

କୃଷ୍ଣ—

(ରାଗ—ଶଙ୍କରାଭରଣ, ତାଳ—ରୂପକ)

(ଢୋ ପୟୋଧର ହର ଗିରି—ପ୍ରଭୃ)

ମୁଁ ପରା ପରକର ଗଣେ ଜଣେ ରେ ସଙ୍ଗିନି । ପଦ ।

କୁନ୍ଦ ସୁନ୍ଦର ଦର ହସନ ବିକାଶିନି
ଶରକାଳ ଆଶ ନାଶ କରୁ କ ସେହି
ଚନ୍ଦ୍ରାନନି । ୧ ।

ଖେଳ କଞ୍ଜନ କର ଖଞ୍ଜନ ବିଲୋଚନି
ଦାସ ନାଶରେ ଢୋ ପ୍ରଭୁପଣକୁ ହାନି
ବିଳାସିନି । ୨ ।

ରେ କ୍ଷମାନିଧି ଆଜ କ୍ରୁଦ୍ଧ ମୋରେ ମାନିନୀ
ବାହୁଡ଼ ବାହୁଡ଼ ବନ୍ଧୁ ମୋ ଗିର ମାନି
ବିନୋଦିନି । ୩ ।

ଆଜ ଏ ଦୋଷ ମୋର କ୍ଷମା କର ଭାବିନୀ
ପର ଆୟତ୍ତେ ମୁଁ ଏହା ଅର୍ଜିଛି ଜାଣି
ଗୁଣମଣି । ୪ ।

ଶୁଣି ଗୁଣିଲେ ଜବେ ରାଧା ହୋଇ କୋପିନୀ
ଶ୍ରୀ କିଶୋରଚନ୍ଦ୍ର ନମେ ଦବା ରଜନୀ
ବେଣୁପାଣି । ୫ ।

ରାଧା—

(ରାଗ—କଲ୍ୟାଣୀ, ତାଳ—ରୂପକ)

(ହେଲା ହେଲା ଶ୍ୟାମ ଆଉ ନକର—ପ୍ରଭୃତି)

ଚାଲ ଚାଲ ଆଗୁ ମୋର ଜଣା ଗଲାନ ଚାଲ । ପଦ ।

କହିବ କା ଆଗେ କସ ପଞ୍ଚତ ହେବା ପୀୟୂଷ
ରସୁ ଉପୁଜଲେ ବିଷ ନାହିଁବ ପିନା ଗ୍ରାଲ । ୧ ।

ହୋଇଛୁ ହେବାର ପୀଡ଼ା ବରଜ ବଦନୁ ବ୍ରୀଡ଼ା
କଲଣି ତ ସବୁ କ୍ରୀଡ଼ା ବଚନ ଶରେ ଧାଲ । ୨ ।

ଯାହା ସ୍ନେହ ରସେ ନିତ ରସି ପୁଆଉଛ ରାତି
ବସି ସେ ରସିକା କତ କରୁଥାଅ ଖିଆଲ । ୩ ।

ଭାଷି ଏହା କୋପେ ଗଲେ କୃଷ୍ଣ କାତରେ ରହିଲେ
ରାଜେନ୍ଦ୍ର ସଦା ଧ୍ୟାଇଲେ କୃଷ୍ଣ ଶ୍ରୀପଦତଳ । ୪ ।

କୃଷ୍ଣ—

( ରାଗ—ଏରୁକୁଲ କାମୋଦ, ତାଳ—ଚୁପ୍ )

( କାଳନ୍ଦୀ ତୀରରେ ବଂଶୀ—ପ୍ରଭୃତି )

କି କଲି କଳପ ବଲ୍ଲୀ
ଜାଣି ଜାଣି ସ୍ୱହସ୍ତରେ ବିନାଶିଦେଲି । ପଦ ।

ବସନ୍ତ ରାହାସ

ଅତି ଯତନରେ ପାଳି
ଫଳ ଆସିବା କାଳକୁ ଦେଲ ତ ଟାଳି । ୧ ।
ଆଜ କ ଜୀବନେ ଆଶା
ଭାଙ୍ଗି ଦେଲ୍ ଧାତା ମୋର ସବୁ ଭରସା । ୨ ।
ଯେଉଁ ଦିନେ ଦେବ ରାହିଁ
ସେହି ଦିନେ ଦିଶେ ଏକା ଚନ୍ଦ୍ରମାମୁହିଁ । ୩ ।
ସଖୀଏ ମିଳି ଏକାଳେ
ରାହିଁ କୃଷ୍ଣଙ୍କୁ ଭିଡିଲେ ରାଜେନ୍ଦ୍ର ବୋଲେ । ୪ ।

ସଖୀ—

( ରାଗ—ଶଙ୍କରାଭରଣ, ତାଳ—ରୂପ୍ )

(କେଉଁ ଧୂର୍ତ୍ତ ଯନ୍ତ ପକ୍ଷୀ—ପ୍ରଭୃ)

କାହିଁକି ଏପରି ଦୁଃଖଚିତ୍ତ
କହ ପ୍ରାଣମିତ । ପଦ ।

କେତେ ଅନୁମାନ କଲେ ହେ ମୋହନ
ତରକ ନପାରୁ ତ ଏ ଚରିତ । ୧ ।
କାହାକୁ ନଡ଼ାକି ପ୍ରଭାତରେ ଏ କି
ବନେ ଏକାକୀ ହେଲ ଉପଗତ । ୨ ।
ଜିନି ଶତପତ୍ର ପତ୍ର ସ୍ୱେର ନେତ୍ର
ନିଦ୍ରାବିହୀନେ ଦିଶେ କଷାୟିତ । ୩ ।
ମଳୟ ସମୀର ବାଜିଲେ ଶରୀର
ଚମକି ହୁଏ ଗାଢ଼ ପୁଲକିତ । ୪ ।

ପାଶେ ରୁଇପର ଅଛୁଁ ଅନୁସର
ଆମ୍ଭଠାରେ ରୁପତ କ ଉଚତ । ୫ ।
ଭାଷିଲେ ଶ୍ରୀଧର ରାଜେନ୍ଦ୍ର ସୁମର
ଶ୍ରୀକୃଷ୍ଣଙ୍କୁ ସତତ ହେଲେ ତୃପ୍ତ । ୬ ।

କୃଷ୍ଣ—

( ରାଗ—ଧନ୍ନାସୀ, ତାଳ—ରୂପ୍ )

( ଆରେ ଖଞ୍ଜନ ନୟନା—ବୃତ୍ତ )

ଆଉ କ ଭଲ ପରୁର ସରିପିବ ଏଥର । ପଦ ।

କରିଥିଲି ଯେତେ ମୁଁ ମନୋରଥ
ସବୁ ଆଜଠାରୁ ହେଲା ତ ବ୍ୟର୍ଥ
ଏଥେ ଥିଲେ କହ କ ପ୍ରତିକାର । ୧ ।
ଚନ୍ଦ୍ରାବଳୀ ଆଜ ଗୋପୀ ସଙ୍ଗରେ
ମଜିଥିଲା ରାସ ରାସ ରଙ୍ଗରେ
କୁତୁକେ ଭିଆଇ ନାନା ସମ୍ଭାର । ୨ ।
ବାଳିକା ଉହାଡ଼େ ରାଧା ଲଳିତା
ରହିଁ ବାହୁଡ଼ିଲେ ହୋଇ କୋପିତା
ଜାଣି ଗଲି ତାଙ୍କ ପାଶେ ସତ୍ୱର । ୩ ।
କହିଲି ବିନୟ ଯେତେ ବଚନେ
ଶବେ ହେଲେ ସେ ନ ଶୁଣିଲେ କର୍ଣ୍ଣେ
ଅଭିମାନ ଚିତ୍ତେ ଗଲେ ସ୍ୱପୁର । ୪ ।
ଶୁଣି ସଖୀମାନେ ପ୍ରବୋଧ ବାଣୀ
କହି ଆଶ୍ୱାସନା କଲେ ସେକ୍ଷଣି
ରାଜେନ୍ଦ୍ର କୃଷ୍ଣଙ୍କୁ କରେ ଜୁହାର । ୫ ।

ଗାହାକ—

( ରାଗ—ଜଂଝୋଟି, ତାଳ—ରୂପ୍ )

(ଗୁଢ଼ ବଭ୍ରମ ଗୁଣଗ୍ରାମ ଶ୍ୟାମ କେଡ଼େ—ପ୍ରଭ)

ଶୁଣ କଳାର ଚେତଣ ରାଧା ଅଭିମାନ ଚିତ୍ତରେ
ପଲ୍ଲବ ଶେଯେ ମଜ୍ଜିଲେ ସ୍ମର ଶର ଘାତରେ । ପଦ ।
ଦମ୍ଭୋଳି ପତନ ମଣି ପିକ-କଳରୁତ ରେ
କଳଶକୁମାର ନାମ ଉଚ୍ଚାରନ୍ତି ଖ୍ୟାତରେ । ୧ ।
ଜାଣି ବରହ ସାନ୍ତ୍ୱନା ସଖୀ କଲେ ସତ୍ତ୍ୱରେ
ବୋଳ ସଚନ୍ଦ୍ର ଉଷୀର ଘନସାର ଗାତ୍ରରେ । ୨ ।
ଲଳିତାକୁ ଗୁହିଁ ରାଧା ଭାଷେ ଧୀରେ ଗୀତରେ
କଶୋରଚନ୍ଦ୍ର ରାଜେନ୍ଦ୍ର କୃଷ୍ଣ ସ୍ମରେ ଚିତ୍ତରେ ।୩।

ରାଧା—

(ରାଗ—ଜଂଝୋଟି, ତାଳ—ଏକ)

(କ ହେବ କହ ବାରେ—ପ୍ରଭ)

ଛାଡ଼ ଗୋ ଆଶା ମୋରେ କ ହେବ ସଖି ଏ
ଶୀତଳ ଉପଚାରେ । ପଦ ।
କପର ମୋ ଜୀବ ଯିବ ଏକଥା ଭାବ
ଜୀବନରେ ଥାଇ କହେବ ସୁଲଭ
ପଡ଼ ଭଗାରହସାରେ । ୧ ।
ମଦନ ଅନଳ ହୋଇ ଅତ ପ୍ରବଳ
ଦହୁଅଛି ଗାଢ଼େ ହୃଦୟ କେବଳ
ନମିଷେ ସହ ନପାରେ । ୨ ।

ଆଜ ମୋ ନୟନେ ଦୁଃଖଜାଳରେ କେତେ
ଗଞ୍ଜି ହେବ ମାଧ ଶୁଣାଅ ମୋ ଶ୍ରୋତେ
ଶ୍ୟାମ ନାମ ନିରନ୍ତରେ । ୩ ।

ଏ ନିର୍ଲଜ୍ଜ ମନ ଏତେକ ଅପମାନ
ଲଭିଲା ଉତ୍ତରେ ହେଉଛୁ ବଲୀନ
ସେହୁ ଗୋପାଳକା ଜାରେ ।୪।

ଲଳିତା ଏ ବାଣୀ ଶୁଣି ବରସେ ଭଣି
ଶ୍ରୀ କିଶୋରଚନ୍ଦ୍ର ସଦା ବେଣୁପାଣି
ପଦପଙ୍କଜେ ଜୁହାରେ । ୫ ।

ଲଳିତା—

( ରାଗ—ବଳାହୁର, ତାଳ—ତ୍ରିପୁଟା )

(ମୁହିଁ ଛାଡ଼ିବାକୁ ଜୀବ—ପ୍ରତି)

କାହିଁକି ପ୍ରାଣ ମିତଣି କହି ଏ ନିଷ୍ଠୁର ବାଣୀ
ଦହି ଦେଉଛୁ ଆମ୍ଭଙ୍କୁ କହ ସୁଲକ୍ଷଣି । ପଦ ।

ତୁ ଶୁଣେ ଥିଲେ ନବୀନା ଆମ୍ଭ ସବୁ ସୁଖ ସିନା
ଶୁଣିହିଁ ତୋର ଏ ବେଦନା ହୃଦ ହୁଏ ହାଣି । ୧ ।

ଛାଡ଼ ମାନସରୁ ରୋଷ ଦିଅ ଗୋ ମତେ ଆଦେଶ
ଶ୍ୟାମଙ୍କୁ ଘେନ ତୋ ପାଶ ଆସିବି ଏକ୍ଷଣି । ୨ ।

କହିଲେ ଯେତେ ଶ୍ରୀହରି ବିନୟେ ତୋ କର ଧରି
ନଘେନି ଅଜିଲୁ ନାରୀମଣି ଦୁଃଖଶ୍ରେଣୀ । ୩ ।

ତା ଶୁଣି ମଦନବାଧା ନସହି ଭାଷିଲେ ରାଧା
ଭଣିଲେ କିଶୋରଚନ୍ଦ୍ର କୃଷ୍ଣପଦ ଗୁଣି । ୪ ।

ରାଧା—

( ରାଗ—ସରଟ, ତାଳ—ଏକ )

( ଥରେ ଗୁହାଁ ରେ ସଙ୍ଗିନ—ପ୍ରଭ )

ସହି ନପାରେ ସଜନ

ବହି ଏ ମଳୟାନିଳ        ଦହି ଦଅଇ କେବଳ । ପଦ ।

ଦେଖ କାମ ପାମର        ତୀକ୍ଷ୍ଣ ଶର ନିକର

ମାରି ସାରି ଦେଲାନ ଧୃତି ମୋର । ୧ ।

ଏହାଙ୍କୁ ପଞ୍ଚଶର        ବୋଲନ୍ତି ଯେଣୁ ନର

ପଞ୍ଚତ୍ୱକୁ ମୋହର ଦେବ କରି । ୨ ।

ଦହିଥିଲେ ତ ହର        ନୟନ ଅଦ୍ଭୁତର

କରି କାହିଁକି ହୃଦେ କଲେ ଜାତ । ୩ ।

ବୋଲି ଲଭିଲେ ମୋହ        ଗୁହାଁ ସଜମାଚୟୁ

କହେ ରାଜେନ୍ଦ୍ର କୃଷ୍ଣ ଚାହ କର । ୪ ।

ସଖୀ—

( ରାଗ—ଧନ୍ନାସୀ, ତାଳ—ରୂପକ )

( ଗୁହାଁ ମୋ ହୃଦ ସଖୀ ଶଙ୍କା କଲାନ ଜମା—ପ୍ରଭ )

କମ ଗୋ ଦେଖ ଆଉ        ସଖୀଏ ହୋଇ ଜମା

ସରି ଯାଉଛି ତ ଆସି        ଆମ୍ଭ ନେବ ପ୍ରତିମା । ପଦ ।

ବବର୍ଣ୍ଣ ହିଶିଗଲାନ        ସବୁ ଶ୍ରୀଅଙ୍ଗ ସୀମା

ନାହିଁ ତ ଅଧର ବମ୍ବେ        ପୂର୍ବର ଅରୁଣିମା । ୧ ।

ଏଥୁ ଏ ବଞ୍ଚିବେ ସତେ ଅଛୁ କ ପରତେ ମା
ଦେଖିବା କ ଆଉ ମୁଖ ଅକଳଙ୍କ ଚନ୍ଦ୍ରମା । ୨ ।

ଆତ୍ମା ରେ ଦାସବତ୍ସଳା ସ୍ନେହାନନ୍ଦ ପ୍ରତିମା
ନ ଭଙ୍ଗ ଶୁଭଙ୍ଗୀ ଆମ୍ଭ ସଉଭାଗ୍ୟ ଗରିମା । ୩ ।

ଦେବାକୁ ମନାସ ଶ୍ରେଗ- ରଗ ସକଳ ବାମ୍ଭା
ରକ୍ଷା କରିବେ ସଙ୍କଟୁ ଅବା ଶଙ୍କର ଉମା । ୪ ।

ଏ କାଳେ ଚେତନା ପାଇ ଭାଷିଲେ ଧୀରେ ବାମା
ବ୍ରଜେନ୍ଦ୍ର ଭରଷେ ବଡ଼ଦୁଁ ବଞ୍ଚିଯିବେ ସେ ରାମା । ୫ ।

ରାଧା—

(ରାଗ—ଆରଖି, ତାଳ—ଆଦ)

(ଲେଉଟୋର ଯୁଗାଲେ ଲାର—ପ୍ରତି)

ପ୍ରିୟ ସହି ତୁ ଯାଇ ଗୋ ଆଜ ରାଜୀବ-ଦଳ-ନେତ୍ର ରାଜେ
ଆସ ଭଲେ ସମଜ । ପଦ ।

ତେଜ କୃପା ଦର୍ପକ ପାଜ
ସାଜ ପୁଷ୍ପ ବାଜ ରଜ ବନ୍ଧେ ବରଜ
ଗର୍ଜି ମର୍ମକୁ ହେଜ । ୧ ।

ଇନ୍ଦୁ ଚନ୍ଦନ ଧନଞ୍ଜୟ
ହେଲ କଶଳୟ ସଜଡ଼ା ତଳ୍ପକାୟ
ସନ୍ତାପୁ ହୋଏ ଭଜ । ୨ ।

ଯେବେ ତାଙ୍କ କରୁଣା ଉଣା
ଥିଲପର ଜଣା ଯିବ ରେ ବଚକ୍ଷଣା
ଦେବ ପ୍ରାଣ ବରଜ । ୩ ।

ଲଳିତା ଶ୍ରୀମତୀଙ୍କ ଛାଡ଼େ
ଗଲା ଶ୍ୟାମ ପାଶେ ରାଜେନ୍ଦ୍ର ଦେବ ତୋଷେ
କୃଷ୍ଣଙ୍କୁ ଧାଏ ମନ୍ତ୍ରି । ୪ ।

ଗାୟକ—

( ରାଗ—ଆନନ୍ଦଭୈରବୀ, ତାଳ—ଝୂଲା )

(କାହିଁକି ନ ଆସିଲେ କହ ସେ—ପ୍ରଭୃତି)

ଶୁଣ କନ୍ଦର
କଲା ଲଳିତା କୃଷ୍ଣ ଦର୍ଶନ
କରିଛନ୍ତି ସେ ଦୁଃଖେ ମାଧବୀ କୁଞ୍ଜେ ଶୟନ । ପଦ ।

ସୁବଳ କରେ ଧୀରେ ଫୁଲ ବ୍ୟଜନ ଚାଳନ
ମଧୁମଙ୍ଗଳ ପାଶେ ବସି କରେ ଆଶ୍ୱାସନ । ୧ ।

ଝର ଝର ଲୋଚନୁ ବହେ ସନ୍ତାପରୁ ବନ
ଥର ଥର ବେପଥୁ ପ୍ରବଳରୁ ଅପଘନ । ୨ ।

ଲଳିତା ହରଷରେ ଯାଇ ସେ ନନ୍ଦନନ୍ଦନ
ପାଶେ ଛାଡ଼େ ରାଜେନ୍ଦ୍ର କରେ କୃଷ୍ଣଙ୍କୁ ବନ୍ଦନ । ୩ ।

ଲଳିତା—

( ରାଗ—ଝିଂଝୋଟି, ତାଳ—ଆଡ଼ )

( ବଞ୍ଚିବିଟି କରୁଚେ ସେ ଶ୍ୟାମଲାଗି—ପ୍ରଭୃତି )

ପାଇଲ କି କଦନ
ଆହେ ମୋହନ । ପଦ ।

ମୃଦୁ ଅବୟବ ହେଲ୍ ଏ ପଲ୍ଲବ
ଶୟନକୁ ଭଜନ । ୧ ।

ହୃଦ ବନମାଳା ଭଗ୍ନ ହୋଇଗଲ୍
ବାଜ ଶ୍ୱାସ ପବନ । ୨ ।

ବାସର ଚନ୍ଦ୍ରମା ସମା ରମା କ୍ଷମା
କରିଅଛ ଲପନ । ୩ ।

ନୟନରୁ ନୀର ବହ୍ନ ନରନ୍ତର
ଗଣ୍ଡ ଦିଶେ ମଳନ । ୪ ।

ଶୁଣି କୃଷ୍ଣ ଭଣେ ରଜେନ୍ଦ୍ର ଶ୍ରୀକୃଷ୍ଣେ
ପଶିଲେ ତ ଶରଣ । ୫ ।

କୃଷ୍ଣ—

( ରାଗ—ସୁରଟୀ, ତାଳ—ଏକ )

( ସାଦାସୁକାରେ ବାରଦା ତାଲ୍—ପ୍ରଭ )

ବର ଚତୁର୍ଥ ମସ୍ତକ ମାଳାରେ
ସ୍ନେହବତ୍ସଳା ବାଳା । ପଦ ।

ମୁଁ ଧାଇ ତୋ ମାର୍ଗ ନରଖେ ଯୋଗୀ ଜନଙ୍କର ମତେ
ଥିଲ ମିଶାଇଲୁ ଗୃହ ଡୋଳା । ୧ ।

ନସର୍ଗ କୃପାଳୁତା ଗୁଣ ପାଳଲୁ ନଷ୍ଟେ ତୁ ଜାଣ
ଆଶ୍ୱାସି ନାଶିଲୁ ହୃଦଜ୍ୱାଳା ରେ । ୨ ।

ସେ ଶାରଦ ଚନ୍ଦ୍ରବଦନା ସ୍ମୃତରେ ଦୁଃଖକୁ ଜଣା
ଗଲ୍ଟି ମୋ ପ୍ରାଣ କଲେ ହେଳା । ୩ ।

ତୁ ଆଜ ସେ ରଙ୍ଗବାନମ୍ମ ମୋ ପ୍ରାଣବନ୍ଧୁଙ୍କୁ ଘେନ
ମଣ୍ଡିବୁ କେଲୀ ନକୁଞ୍ଜ ଭଲ । ୪ ।
ଶୁଣି ଲଳତା ମୋଦେ ଭଣେ କଶୋରଚନ୍ଦ୍ର ସୁମନେ
କୃଷ୍ଣପଦ ଧାନେ ହେଲେ ଭୋଲା ରେ । ୫ ।

ଲଳତା—

( ରଗ—ଜଂଝୋଟି, ତାଳ—ରୂପ୍ )

( ମାଗ। ବାଉନ ନାମ୍ମାର ଦେ ଚେଲ—ପ୍ରଭ୍ତ )

ନବ ଛଇଲ ମଉଳ ମଣ୍ଡନ
କରିବ କ ନବେଦନ । ପଦ ।

ହେ ରମାରତନ ଶ୍ରେଗୁଣ୍ଡ ଯେତେ କଦନ
ପାଇ ଅଭମାନ
ଗଲ୍‌ବେଳ୍ପ ହେ ମୋହନ । ୧ ।

ପ୍ରବଳ ଯାତନା ଘଡଘଡ଼କେ ଚେତନା
ବୁଡ଼ଇ ସାନ୍ତ୍ୱନା
ନହୁଏ ତ ସେ ବେଦନା । ୨ ।

ତଳପକୁ ସାଜ ଥିବା କଣଲପୁରଜ
ହୋଇଯାଏ ଖଜ
ଶ୍ରୀମଣ୍ଡ ଶ୍ରୀଅଙ୍ଗ ବାଜ । ୩ ।

ଶୁଣି ଏହା ହରି ଘଷେ ହୃଦେ କର ମାରି
କୃଷ୍ଣପଦ ସ୍ମରି
ଭଣେ ରଜନ ବଳାରି । ୪ ।

କୃଷ୍ଣ—

( ରାଗ—ଜଂଝୋଟି, ତାଳ—ଏକ )

( ତୋର ଦେଖାନ୍ କଶୋରୀ—ପ୍ରଭୃ )

ମୋର ପରାଣ ଈଶ୍ୱରୀ
ମୋହଲାଗି ଏତେ ଦୁଃଖ ପାଇଲାକ ସୁକୁମାରୀ । ପଦ ।

କ୍ଷମାକର ଦୋଷ ବୋଲି ପଡ଼ୁଁ ପଦେ ଦେଇ ପେଲି
ଗଲବେଳେ ଫିଙ୍ଗିଲ ରୋଷେ
ମୋ ପରେ ନୟନ କଟାର । ୧ ।

ଆହା ସେ ମୋ ରଙ୍କନଧି ଶିଖିଲ କାହୁଁ ସେ ବୁଦ୍ଧି
ନ ଯୋଗନାଲ ତଳେ
ଯେତେ ମୁଁ କହିଲ ବସନ ପ୍ରସାର । ୨ ।

ଖେଳଲୋଳ ଖଞ୍ଜନାକ୍ଷୀ ପରିଣତ ଚନ୍ଦ୍ରମୁଖୀ
ତେତେ ବେଳ୍ପ ବଳେ
ପାଶକୁ ନେଇଛୁ ମୋ ମନ ଓଟାର । ୩ ।

ମୋ ଧନକୁ ସଙ୍ଗେ ଘେନ ନ ଆସିଲେ ରେ ସଜନ
କହେ ମୁହିଁ ନିଶ୍ଚୟ କର
ଯିବଟି ଜୀବନ ବାହାର । ୪ ।

ଲଲିତା ଗଡ଼ିଲ ହସି ଭଣେ ମୋଦେ କଶୋର ଶଶୀ
ରାଜଇନ୍ଦ୍ର ଶ୍ରୀକୃଷ୍ଣଚନ୍ଦ୍ର
ଶ୍ରୀପଦ ନଳିନେ ଜୁହାର । ୫ ।

ଲଳିତା—

(ରାଗ—ଫରଜ୍, ତାଳ—ଏକ)

(କେତେ ଦିନୁ ବସନ୍ତଋତୁ—ପ୍ରଭୃ)

ମୁଞ୍ଚ ପଞ୍ଚବାଣ ହେ ହେଲ ମେଲାଣି । ପଦ ।

ସକଳ ସଙ୍ଗୀମାନେ ବିରସ ବଦନେ
ମୁହିଁ ରହିଥିବେ ମୋର ସରଣୀ । ୧ ।

ସିଲ ହେଲ ମୁଁ ଏଥର ପ୍ରଷ୍ଟାଚୀ ଶିଖର
ଚୂଳକୁ ଚୁମ୍ବିଲେଣି ତ ତରଣି । ୨ ।

ପ୍ରହରେ ହେଲେ ରଜନୀ ଆସିବି ମୁଁ ପେନି
ସଙ୍ଗେ ସେହି ଦଣ୍ଡ-ଧୃତ-ଧାରଣୀ । ୩ ।

ତୁମ୍ଭେ ଏ ମାଧବୀ କୁଞ୍ଜେ ହୋଇଥିବ ସଜେ
ଏତକ ମାଗକ ମୋର ମାଗୁଣି । ୪ ।

ପ୍ରବୋଧି ସେ ରାଧା ପାଶେ ଚଳିଲା ହରଷେ
ଭାଷିଲେ ରାଜେନ୍ଦ୍ର ନୃପ ଅଗ୍ରଣୀ । ୫ ।

ଗାହାକ—

(ରାଗ—କମୋଦୀ, ତାଳ—ଗୃପ୍)

(ପେନି ସଖା ସମାଜ—ପ୍ରଭୃ)

ଶୁଣ ନଳକୁବର ଲଳିତା କୃଷ୍ଣଙ୍କର
ସଙ୍କେତାଦି ରହସ୍ୟ

ଛପି ଲତାଜାଳରେ ଶୁଣି ପଦ୍ମା ସଙ୍ଗରେ
ଚନ୍ଦ୍ରାବଳୀ ଆଗରେ
କଲା ସବୁ ପ୍ରକାଶ । ପଦ ।

ଦୁହେଁ ଏକାନ୍ତେ ଚାଲ — ରାଧା ଲଳିତା ଭଲ
ନିଜେ ସାଜ ପଡନରେ ସୁବେଶ
କୃତ ସଙ୍କେତ ସ୍ଥାନେ — ଯିବାକୁ ମୋଦମନେ
ସେ ପଦ୍ମା ଚନ୍ଦ୍ରାବଳୀ
ବାହାରିଲେ ରଭସ । ୧ ।

ଭାବିଲେ ସେ ଚତୁରୀ — ଦୁହେଁ ଉପାୟ କରି
କୃଷ୍ଣଙ୍କୁ ନେବାକୁ ଆନ ପ୍ରଦେଶ
ରାଜେନ୍ଦ୍ର ଭାଷେ ସତେ — ସ୍ମର ଥିଲେ ଜାଣତେ
ରମଣୀଙ୍କ ଅସାଧ
ହୋଇ ରହନ୍ତି କସ । ୨ ।

ପଦ୍ମା—

(ରାଗ—ମୁଖାବରୀ)

(ମୁନିଙ୍କ ଗୋଷ୍ଠୀ ସଦୃଶ—ପ୍ରଭୃ)

ସଧୀରେ ଆସ ସଜନି — ପଦଶାକ ଚହ୍ନି ଚହ୍ନି
ଘୋର ଅନ୍ଧାର ରଜନୀ — ଯୋଗୁଁ ନ ଦିଶେ ଅବନୀ । ପଦ ।

ଚନ୍ଦ୍ରା—

କେତେ ଗୋ ଆଉରି ଦୂର — ମାଧବୀ କୁଞ୍ଜ ମନ୍ଦିର
ବ୍ୟଥା କଲାଣି ପୟର — ଦିଅ ମୋତେ କରଭର । ୧ ।

ପଦ୍ମା—

ନିକଟେ ଚନ୍ଦ୍ରିକ ଚୂଳ — ଅଛନ୍ତି ନୃପ ଵକୁଳ
ପ୍ରସରେ ଶ୍ୟାମ କୁନ୍ତଳ — ବନମାଳା ପରିମଳ । ୨ ।

ଚନ୍ଦ୍ରା—

ଆଜ ସବୁ ମନୋରଥ          ହୋଇବ ପର୍ବ ସାର୍ଥ
ତୋହର ବଚନ ସତ          ପରାଏ ନୋହେ ପ୍ରତ୍ୟତ । ୩ ।

ପଦ୍ମା—

ହେଟି ତ ସିଙ୍ଗାର ବଟ          ଥିବେ ଏ ଯମୁନା ଘାଟ
ବାସନ୍ତୀ କୁଞ୍ଜେ ସେ ନଟ          ପଟଳୀ ଶିର ମୁକୁଟ । ୪ ।
ଏ ରୂପେ ହେଉ ପ୍ରବେଶ          ରାଧା ଭ୍ରମେ ପୀତବାସ
ଭେଟିଲେ ହୋଇ ହରଷ          ସ୍ୱରେ ରାଜେନ୍ଦ୍ର ବ୍ରଜେଶ । ୫ ।

କୃଷ୍ଣ—

(ରାଗ—ପାନ୍ଥବରାଳ, ତାଳ—ଆଦ୍ୟ)

(ରେ ସୁନ୍ଦରୀମଣି ଦେନ ମୋ ଗୁହାରି—ପ୍ରଭୃତି)

ଆସ ଆସ ମୋର ପ୍ରାଣକୁ ସଖାଳ
କରୁଣା ଦୃଗଞ୍ଚଳ ଢ଼ାଳ । ପଦ ।

ସାରସ ମନ୍ଥର          ଗମନ ନିର୍ଜିତ
ଗର୍ବଭରାଳସୀ ମରାଳ
ଶୀତକର ହିମ          ରମ୍ୟ ସ୍ମିତ ସୁଧା
ଧାରାତର ଧରାକୁ ଧବଳ । ୧ ।

ଏ ନବଯୌବନ          ଲାବଣ୍ୟ ଦର୍ଶନେ
ତାପସଗଣେ ନ ସମ୍ଭାଳ
ଛୁଡ଼ିବେ ଯୋଗକୁ          ଜଡ଼ିବେ ଯପାରେ
ଝଡ଼ିବ କରୁ କରମାଳୀ । ୨ ।

ଅଙ୍ଗଜର ଜ୍ୱର ରଙ୍ଗାବଲ୍ଲୀ ମୋର
ଅଙ୍ଗକୁ ଧନ ଦଏ ଜାଳ
ସଚନ୍ଦ୍ର ଚନ୍ଦନ ଚର୍ଚ୍ଚିତ ଶୀତଳ
ଉର ମୋ ଉରେ ଦଅ ଢାଳ । ୩ ।

ମାର ଶାସ୍ତ୍ର ଜପା- ଧାସ୍ୟୀ ତେଜ କୃପା
ଖେଳ ମୋ ଉତ୍ସଙ୍ଗେ ଜଞ୍ଜାଳ
ଶ୍ରୀ କଶୋରଚନ୍ଦ୍ର ସତତ ବ୍ରଜେନ୍ଦ୍ର
ପ୍ରପଦେଁ କରେ ନଉଁଛଳ । ୪ ।

ଚନ୍ଦ୍ରାବଳୀ—

(ରାଗ—ବଲାହୁର, ତାଳ—ଏକ)

(ଏ ବନୁ ସଜନ ବନଜ ଈକ୍ଷଣ—ପ୍ରଭୃ)

ଧନ ହେ ମଦନମୋହନ ମୂରତ
ନଖିଳ ନାଗରଗଣ ମଥା ମୋତ । ପଦ ।

ଘେନ ମୋ ଉରଜ ଆହେ ନୀଳଦୀପ୍ତ
ଏ ବପିନ ସ୍ଥଳ ଭସ୍ନଙ୍କର ଅତ
ରବନନ୍ଦନାର ତୀର ବୃକ୍ଷତତ
ଘଞ୍ଚ ଘବୁଁ ଗୃହେଁ ଜାତ ହୁଏ ଖ୍ୟାତି । ୧ ।

ଗୋବର୍ଦ୍ଧନ ଗିର ପରସର କତି
ଚମ୍ପକ ବନକା ହୋଇ ଶୋଭାବତୀ
ଅଛୁ କୁନ୍ଦ କୁରୁବକ ମଲ୍ଲୀ ଜାଈ
ଲତାମାନେ ହର ନେଉଛନ୍ତ ମତ । ୨ ।

ଏଥେନ ସେଠାକୁ ଯେନି ମୋ ବସନ୍ତ
ବଜେକର ମିବା ମୋ ନେସସମ୍ପତ୍ତି
ଗଲେ କୃଷ୍ଣ ଏଣେ ଲଳିତା ଶ୍ରୀମତି
ଆସିଲେ ରାଜେନ୍ଦ୍ର କରେ କୃଷ୍ଣେ ନତି ।୩।

ଲଳିତା—

(ରାଗ—ନାଦନାମକ୍ରିୟା, ତାଳ—ଆଦ୍ୟ)

(ହେଟି ମା କେ'ଟି କୁଞ୍ଜକୁଟୀରେ—ପ୍ରଭୃ)

ଆସ ତୁ ଖରେ ପ୍ରିୟସଖି ରେ । ପଦ ।

ଅଭିନବ ବୟସି ସଙ୍କେତ କାଳ ଆସି
ବଲମ୍ବନ କରୁ ବଳମ୍ବ କାହିଁକ ରେ । ୧ ।

ଏକା ହୋଇ ମୋହନ ତୋ ହଗରେ ନୟନ
ଦେଇ ରହିଥିବେ କେଳୀକୁଞ୍ଜ ଦୁଆରେ । ୨ ।

ତୋର ଶ୍ରୀଅଙ୍ଗ ଝଳ ଷଣରୁଚକ୍ର ବଳ
ପ୍ରକାଶେ ଯୋଡ଼ାଇଦିଅ ନୀଳ ଶାଢ଼ୀ ରେ । ୩ ।

ପଦୁ ମଣି ମଞ୍ଜୀର ଫେଇଦିଅ ମୋ କର
ଧ୍ୱନି ଯୋଗୁଁ ଜଣା ପଡ଼ିବାଟି ପଥରେ । ୪ ।

ରାଧା ଯାଇ ହରଷେ ମିଳୁ ସେ କୁଞ୍ଜ ପାଶେ
ଭଣେ ଶ୍ରୀକୃଷ୍ଣଙ୍କୁ ରାଜଇନ୍ଦ୍ର କୂହାରେ । ୫ ।

ଗୀତ—

(ରାଗ—ଆନନ୍ଦଭୈରବୀ, ତାଳ—ଏକ)

(ଇନ୍ଦ୍ରାପ୍ରୋତ୍ସ ଏନୁଇକାଗ୍ଭଲୁ—ପ୍ରଭୃତି)

କାହିଁ ଅଛନ୍ତି ମୋ ପ୍ରାଣସଙ୍ଗାଳି । ପଦ ।

ଯେବେ ଏ ନିକୁଞ୍ଜେ କରି ଥାଆନ୍ତେଟି ବନେ
ବଳି ଆସନ୍ତେନି ଦେହଳି । ୧ ।

ସୂଚୀଭେଦ ତମେ ଲୁଚି କଅବା ପ୍ରେମେ
ରହିଛନ୍ତି ରସଖିଆଲି । ୨ ।

ନଲଗେ ପରତେ ଥିଲେପରି ଗୋ ସତେ
ଦିଶେ କେଳୀ ନିକୁଞ୍ଜ ଖାଲି । ୩ ।

ଶଙ୍କେ ତ ମୋ ଚିତ୍ତ ସଙ୍କେତକୁ କି ମିତ
ଜାଣିଥିଲି ସେ ଚନ୍ଦ୍ରାବଳୀ । ୪ ।

ଛନ୍ଦୁ କରି ନିଜ ସଦ୍ମକୁ କି ଆଜ
ପଦ୍ମା ପେଷି ନେଲି କଣ୍ଠାଳି । ୫ ।

ପୁଣି ସେ ଭାଷିଲେ ଗଜଇନ୍ଦ୍ର ବୋଲେ
କରି ଶ୍ରୀକୃଷ୍ଣେ ନିଉଁଛାଳି । ୬ ।

ଗୀତ—

(ରାଗ—ନାଦନାମକ୍ରିୟା, ତାଳ—ରୂପକ୍)

(ଫରାଣମିତ ପଗ୍ଭରଲ ଏ ତଗରକୁ—ପ୍ରଭୃତି)

ନାହିଁ ପରତେ ଆଉ କି ଆସିବେ ଗୋ ସତେ । ପଦ ।

ଯାମରୁ ବଳିଲାଣି ଯାମିନୀ ଶ୍ୟାମର ଗୁଣ ନାହୁଁ କି ଚହ୍ନି
କାମକେଳିରେ କେଉଁ କାମିନୀ
ସଙ୍ଗେ ରହିଥିବେ ମାତି ଗୋ । ୧ ।

ଯାତୁକ ଜନେ କର ବିଶ୍ୱାସ          ଯା ତୁ ନିଷ୍ଠୁର ମଣି ତା ଭାଷ
ଆତୁର ହୋଇ ଆସିଲୁ କହ
ମନକୁ ନ ଆସେ ମୋର ଗୋ । ୨ ।
ବାସବ ଦିଗେ ଦିଅ ନୟନ          ହାସ ପ୍ରକାଶ କରି ବଦନ
ହେଲାଣି ଆସି ଉଦୟ ଶଶୀ
ବିରହିଣୀ ଜନ କାଳ ଗୋ । ୩ ।
କକଚଲେ ସଖୀ ସେହୁ ପୁତନା          ଷଣ୍ଢ ବକର ଫଗୁଣ ଧେନା
ନମେ ରାଜେନ୍ଦ୍ର ସେ ଗୋପଚନ୍ଦ୍ର
ଗୋପାଳ ଭୂପାଳ ବାଳ । ୪ ।

ଲଳିତା—

( ରାଗ—ଆହାରୀ, ତାଳ—ରୂପକ୍ )

(ଆସିବେ ଏହିକ୍ଷଣି ରେ—ପ୍ରଭୃତି)

ସନ୍ତାପ ଦେଇ          ନୁହ ମୋ ସହି
ଆଜନ୍ମ ସୁଖୀ ବାଳା ରେ । ପଦ ।
ସମ୍ଭାଳ ଲବେ          ବିଜେ କରିବେ
ମତ୍ତ ବାରଣ ଲୀଳା ରେ । ୧ ।
ସହ ବିଶ୍ୱାସେ          କହ ନିର୍ଦ୍ଦୋଷେ
କାଟି ଦେବେ କି ଗଳା ରେ । ୨ ।
ବୃଥା କଳ୍ପନା          ପଥ ଭ୍ରମଣା
ଚିତ୍ତ ସଂଶୟ ଦୋଳାରେ । ୩ ।
ଝୁଲ ଗୋ ସହି          ଲଡାଙ୍କୁ ଯାଇ
ବୁଡିବା ଗୁଡ଼ ହେଲା ରେ । ୪ ।
ରାଧା ଭାଷିଲେ          ରାଜେନ୍ଦ୍ର ବୋଲେ
କୃଷ୍ଣପଦ ମୋ ଭେଳା ରେ । ୫ ।

ରାଧା—

(ରାଗ—ପାନ୍ତୁବରାଳି, ତାଳ—ଏକ)

(ଆଜ ଶ୍ରୀହରି ରାଧାର—ପ୍ରତି)

କହ କହ ଗୋ ମାଳତି　　କୁନ୍ଦର ମନ୍ଦାର ସେବତି
କାଲେ କି ଏ ପଥେ ବଜେ　　ନବୀନ ଘନ ମୂରତି ॥ ପଦ ॥

ଲଳିତା—

କହ ଗୋ ହରିଣୀମାନେ　　ବିଲୋକି ଥିଲେ ନୟନେ
ଯାହା ହୃଦେ ବନମାଳ　　ଲୁଚିଲେ ସେ ଗଲେ କି ଏତେ ।୧।

ରାଧା—

ଦେଖିଥିଲେ କହ ଚମ୍ପା　　ବଲ୍ଲରୀ ଗୋ ଅନୁକମ୍ପା
କରି ଯାହା ବଂଶୀସ୍ୱନ　　ଯୁବତୀ ଧଇର୍ଯ୍ୟ କମ୍ପା ।୨।

ଲଳିତା—

ମସ୍ତକେ ଚନ୍ଦ୍ରକଚୂଳ　　କଟିରେ ପୀତ ଦୁକୁଳ
ଯାହାର ତାଙ୍କୁ ବିଲୋକି　　ଅଛୁ କି କହ ତମାଳ ।୩।
ଏତେକି ଖୋଜି ସେ ସ୍ଥଳେ　　ନପାଇ ରାଧା ଭାଷିଲେ
ରାଜେନ୍ଦ୍ର ସ୍ମରେ ସତତ　　ନମି କୃଷ୍ଣପଦ ତଳେ ।୪।

ରାଧା —

( ରାଗ—ବେହାଗ, ତାଳ—ଝୁମ୍ପ୍ )

(ହା ମେଧାବନ ରାଧେ—ପ୍ରତି)

ଗ୍ଲାଡ଼ି ସଜନି　　　　ମୋହନ ଆଶା
ଆଜ ଆସିବେ କି ରେ ସୁଦୃଶା । ପଦ ।

ଅର୍ଦ୍ଧେନ୍ଦୁ ବଳ ଗଲା ତ ନଶା
ଛୁଟିଲା ମୋର ସବୁ ଭରସା । ୧ ।

ଦେଖ ସୁଧାଂଶୁ ତୁଷାଗ୍ନି ମିଶା
କରନ୍ତକର କରେ ବରଷା । ୨ ।

ମୋ-ଭାଗ୍ୟେ ଏକା ଥିଲା ଏ ଦଶା
ନାହିଁ ପାଇବା ଉଗାଶ୍ୱସା । ୩ ।

ବିନା ଦୋଷେ ଏ ଦଣ୍ଡ ସହସା
ଦେଇ ବୋଲାଉ ସେ ମହାଯଶା । ୪ ।

ଏହା କହି ସେ ହେଲେ ବିବଶା
ଭଣେ ଚକ୍ରି ଠୀ ରସା ବାହସା । ୫ ।

ଲଳିତା—

( ରାଗ—ଧନାଶ୍ରୀ, ତାଳ—ଝୁମ୍ପ )

( ଆତ୍ମଠାରେ ଉଚିତ କି ଏହା—ପ୍ରତି )

ଆହା ରେ ମୋ ନବନୀତଦେହା
ମୋହଲାଗି ଧନ ଅରଜିଲୁ ଏହା । ପଦ ।

ଦେଖି ଏ ଦଶା ତୋହର ସହି
ଧିକ ମୁଁ ଜୀବନେ ରହିଅଛି ପାହା । ୧ ।

ତାରିବା ଲୋକ ମାରିବ ଯେବେ
କହିବା କା ଆଗେ କେହି ହେବ ସାହା ।୨।

ନଶୀଥେ ବନେ ଡ଼ାକ ବିପଦ
ଦେବା କି ଉଚିତ ହେଲା ମାଳବାହା । ୩।

ଧର୍ମ କି ଏହା ମମତା ମନୁ
ତେଜି ବୋଲାଇବା ଅବଳା ଦୋରେହା ।୪।
ହର ଯେ ସେ କି ଲେଶ ଅଧିକ
କଷି ମୃଣାଳରେ କଷିବକି ଆହା ।୫।
ଭାଟନ୍ତି ଗଜେନ୍ଦ୍ର ସେ କୁମ୍ଭେ ଏକା
ମଣ୍ଡାଅ ମାନସ ଦଳିପିବ ରାହା ।୬।

ଗାହାକ—

(ରାଗ—ପାନ୍ତୁବରାଳି, ତାଳ—ଏକ)

(ଚକାଏ ଗୋରୁଙ୍କ ରାଣ, ପଦ୍ଧତି—ପ୍ରଭୃତି)

ଏ ଅନ୍ତେ ଶୁଣ କିନ୍ନର ସେ ଲଳିତା ଉପଚାର
କରନ୍ତେ ଚେତନା ପାଇ ପୁରକୁ ଗଲେ ସତ୍ୱର ।୧।
ବିରହ ସାନ୍ତ୍ୱନା ପାଇଁ ଉପଚାର କଲେ ସଖୀ
ପଲ୍ଲବ ଶେଯେ ଶୁଆଇ ସିଞ୍ଚିଲେ ଚନ୍ଦନ ନୀର ।୨।
ଲଳିତାକୁ ସଖୀମାନେ ପଚାରିଲେ ଦୁଃଖମନେ
ନମିଲେ କିଶୋରଚନ୍ଦ୍ର ଶ୍ରୀକୃଷ୍ଣ ପଦ୍ମପୟର ।୩।

ସଖୀମାନେ—

( ରାଗ—ହିନ୍ଦୁସ୍ଥାନୀ ଭୈରବୀ, ତାଳ—ଏକ )

(ନ ଜାଣଇ କିଛି ମୁହିଁ—ପ୍ରଭୃତି)

କି ଗୋ ଏ କି ଦଶା ସହି ଘଟାଇଲା ଆଣି ବିହି
ପାଇଲୁ କେତେ କଦନ ଆହା
ଏ ଚନ୍ଦ୍ରମାମୁହିଁ ।ପଦ।

ଅଟଇ କେଡ଼େ ନିଷ୍ଠୁର ହୃଦୟ ସତେ ଆମ୍ଭର
ଦେଖି ଏ ଦୁଃଖ ଯାହାଟି
ଫାଟି ଯାଉ ନାହିଁ । ୧ ।

ସହଜେ ତ ଏ ଅବଳା ତା ପରେ ବିରହଜ୍ୱାଳା
ସହିବ କେହ୍ନେ ସୁକୋମଳା
ବଞ୍ଚିବଟି କେହ୍ନେ । ୨ ।

ଶିରୀଷ ଫୁଲେ ଅଶନ ଘାରୁ ପଡ଼ଏ ସଜନ
ଘଟିବାକୁ କୁଶପାଣି
ରଖିଥିଲ କାହିଁ । ୩ ।

ଶୁଣି ଶ୍ରୀମନ୍ତ ସେକାଳେ ସଖୀଙ୍କି ଧୀରେ ରହିଲେ
ରାଜେନ୍ଦ୍ର ନମିଲେ କୃଷ୍ଣ
ପାଦପଦ୍ମ ଧ୍ୟାୟି । ୪ ।

ରାଧା—

(ରାଗ—ହିନ୍ଦୁସ୍ତାନୀ ଭୈରବୀ, ତାଳ—ଏକ)

(ଏନ୍ତା ରେସିନାବେ ଏନ୍ତା—ପ୍ରଭୃ)

ପ୍ରିୟ ସଙ୍ଗୀମାନେ ଶୁଣ ସାବଧାନେ । ପଦ ।

ପ୍ରସଙ୍ଗରେ ହେଲେ ସେହି ଧୂର୍ତ୍ତ ନାମ ବେଲେ
ନ ଉଚ୍ଚାରିବ କେବେହେଁ ମୋ ସନ୍ନିଧାନେ ।୧।

ଶ୍ୟାମଳ ପ୍ରସୂନ ଲତାକୁଂ ନାଶ ବହନ
ଶୁକ ଶାରିକା ପିକ ନ ରଖ ସଦନେ ।୨।

ଏ ମର୍କତ ଚୂଡ଼ି କରୁ ବେଗେ ନଅ କାଢ଼ି
ସବୁ କସ୍ତୂରୀ ଫିଙ୍ଗ ଚିହ୍ନହୁତା ବନେ ।୩।

ଶୁଣି ଆଳୀମାନେ ଦୁଃଖେ ରହିଲେ ମଉନେ
ରଜେନ୍ଦ୍ର ମନ୍ତ୍ରେ ଶ୍ରୀକୃଷ୍ଣ ପଦ ଧ୍ୟାନେ ।୪।

ଗାହାକ—

( ରାଗ—ସିନ୍ଧୁଖମାଚ, ତାଳ—ଏକ )

( କାହିଁକି ମୋ ଗଲା ମରକତ—ପ୍ରଭୃ )

ଶୁଣ ହେ କୃବର ସୁତ ଏଥୁ ଅନ୍ତେ
କୃଷ୍ଣ ଗଲେ ଯେ ଚନ୍ଦ୍ରାବଳୀଙ୍କ ସଙ୍ଗତେ । ପଦ ।
ତ୍ରିଲୋକ ମୋହନ ସେ ରାମାରତନ
ରମଣୀପ୍ରୂ ବେଶ ଭଙ୍ଗୀ ଶିଖିଲେ ତ୍ୱରିତେ । ୧ ।
ଜଣା ପଡ଼ିଯିବ ବୋଲି ମନେ ଭାବି
ମେଲଣି ହୋଇଲେ ତହୁଁ ନ ଜାଣିଲି ମତେ । ୨ ।
ରାଧାଙ୍କ ସଙ୍କେତ କୁଞ୍ଜକୁ ଆଗତ
ହୋଇ ରହିଲେ ଅତଣ ଦୁଃଖ ଧରି ଚିତ୍ତେ । ୩ ।
ସଙ୍ଗେ ଘେନି ଆଳୀ ଗଲେ ଚନ୍ଦ୍ରାବଳୀ
ପୁରକୁ ନମେ ରଜେନ୍ଦ୍ର କୃଷ୍ଣଙ୍କୁ ସତତେ । ୪ ।

କୃଷ୍ଣ—

(ରାଗ—ଏରୁକାଲି କାମୋଦି, ତାଳ—ଏକ)

(ସଖି କହ ମୁଁ କପରି ଜୀବନ ଧରିବି ଝଟିତ—ପ୍ରଭୃ)

ଆହା କି ହେଲି ମୋ ପ୍ରାଣବାନ୍ଧବୀ
ପାଇ କି କଦନ
ରହିଁ ରହିଁ ମତେ ନିରଖେ ଯାଇଥିବ ସଦନ । ପଦ ।

କବା ନ ସହ୍ନ ଶିରୀଷ କୋମଳା
ନର୍ଦ୍ଧୟ ମଦନ
ତୀବ୍ର ବାଣଗଣ ଘାତରୁ ତେଜିଥିବ ଜୀବନ । ୧ ।

ଆଜ ଦେଖିବାକୁ ଏଥୁ ଯାଇ ମୁଁ
ତା ରୂରୁ ଲପନ
ନାହିଁ ନାହିଁ ପ୍ରତେ ସତେ ମୁଁ ଅଟେ କର୍ମ ବନ୍ଧନ । ୨ ।

ତାର ହୃଦୟ ହାରରୁ ମୌକ୍ତିକ
ବରହ ଦହନ
ତାପ ଯୋଗୁଁ ଫାଟି ଏ ସ୍ଥଳେ ହୋଇଅଛି ପତନ । ୩ ।

ମିଳ ଏକାଳେ ସେ ବନଦେବତା
ଭଷିଲେ ବଚନ
ଶ୍ରୀକଶୋରଚନ୍ଦ୍ର ରଜେନ୍ଦ୍ର କୃଷ୍ଣେ କଲେ ବନ୍ଦନ । ୪ ।

ବୃନ୍ଦା—

(ରାଗ—ଶଙ୍କରାଭରଣ, ତାଳ—ରୂପ୍)

(ଏହି କୁଞ୍ଜେ ଥିବେ ପର, ପ୍ରାଣ ସଙ୍ଗିନୀ ରେ—ପ୍ରଭୃ)

କହ ହେ ଘନବରନ
ଆଜ କାହିଁକି ହେ ଏଡ଼େ ଦୁଃଖିତ ମନ ॥ ପଦ ॥

ନଖିଳ ଶୋଭା ସଦନ ପ୍ରସନ୍ନ ମୁଖ ନଳନ
ଉଷାର ନିଶାରମଣ ନଭ ମଳନ । ୧ ।

ପୁଣ୍ଡରୀକ ସହୋଦର ନେନ୍ତ୍ର ବହୁ ନୀରଧାର
ଆର୍ଦ୍ର କରଦଏ ଉର ପୀତବସନ । ୨ ।

ସଖୀଏ କେହ୍ନ ସଙ୍ଗରେ ନାହାନ୍ତି ଏଡ଼େ ପ୍ରଭାତେ
ଏକା ହୋଇ କି ନିମନ୍ତେ ଆସିଲ ବନ । ୩ ।

ଶୁଣି ଶ୍ରୀହରି ସେକାଳେ ହସିଲେ ଅତି କୌତୁକଳେ
ରାଜେନ୍ଦ୍ର ମୁଦେ ବଦିଲେ ନନ୍ଦନନ୍ଦନ । ୪ ।

କୃଷ୍ଣ—

(ରାଗ—କାଫୀ, ତାଳ—ଝମ୍ପ୍)

(ହେଲୁକି ଏହା ସୁନ୍ଦର ମୋହନ—ପ୍ରଭୃତି)

ଘଟିଛି ବୃନ୍ଦେ ଆଜ ଯା ବିପତ୍ତି
ତୋ ପ୍ରତିକାର ବିନା ନାହିଁ ମୋର ଆନ ଗତି । ପଦ ।

ମାଧବୀ କୁଞ୍ଜେ ସଙ୍କେତ ଶ୍ରୀମତୀ
କରି ଥିଲି ତ ଜଗି ଥିଲି ହୋଇ ତୋଷମତି ।୧।

ସେ ଚନ୍ଦ୍ରାବଳୀ ଜାଣି ଏ ସଙ୍ଗତି
ରାଧାର ବେଶ ଧରି ପହଞ୍ଚିଗଲା ଝଟତି ।୨।

ଆନ କୁଞ୍ଜକୁ ନେଲା ବହୁ ପ୍ରୀତି
ଏଣେ ରାଧା ଲଳିତା ଆସି ଜଗିଲେ ସେ ରାତି ।୩।

ନ ଦେଖି ମତେ ଗଲେ ଦୁଃଖେ ଅତି
ମୋର ଦୋଷ ନଥିଲା ପରି କରୁଅ ପ୍ରତୀତି ।୪।

ଶୁଣି ସେ ବୃନ୍ଦା ହସିଲେ ଭାରତୀ
ଭଣେ କିଶୋରଚନ୍ଦ୍ର କରି କୃଷ୍ଣଙ୍କୁ ପ୍ରଣତି ।୫।

ବୃନ୍ଦା—

(ରାଗ—ତୋଡ଼ି, ତାଳ—ଆଡ଼)

(କୁନ୍ଦ ଦସନ ହାସିନୀ ଅରବିନ୍ଦ—ପ୍ରଭୃତି)

ଆହେ ନିଖିଳ ମନମୋହନ ପୁଣ୍ଡରୀକ ନୟନ । ପଦ ।

ପର ଆୟତ୍ତରେ ଏହା ଅରଜିଲ ମିଳିବାହା

ପାଇଥିବ ସେ ସୁଦେହା

ଆହା କି କଦନ । ୧ ।

ଯେବେ ତୁମ୍ଭ ଆଦେଶ ପାଇ ଲଳିତା ପାଶ

କହିବି କରି ବିଶ୍ୱାସ

ଗିରେ ତୋଷି ମନ । ୨ ।

ପରିବ ଶୀତମୟୂଖ ଗରବହର ଶ୍ରୀମୁଖ

ନ ଶୁଖାଅ ଦେଖି ଦୁଃଖ

ହୁଏ ମୋ ବର୍ଦ୍ଧନ । ୩ ।

ଏତେ କହି ବୃନ୍ଦା ଗଲେ ଲଳିତାକୁ ଭେଟିଲେ

ବ୍ରଜେନ୍ଦ୍ର ଶ୍ରୀକୃଷ୍ଣ ପଦେ

ନମେ ନିଶିଦିନ । ୪ ।

ଲଳିତା—

(ରାଗ—ଜଂଝୋଟି, ତାଳ—ଏକ)

(ସଜନି ନ ଜାଣୁ କି ତୁହି—ପ୍ରଭୃତି)

କି ଭାଗ୍ୟ ଆଜ ଗୋ ଆମ୍ଭର । ପଦ ।

ଆସିଲ କି ପ୍ରିୟସହି ଦୁଃଖ ଶୁଣି ନ ସହି

ଏ ପୁରେ ସତ୍ୱର । ୧ ।

ତୁମ୍ଭଙ୍କୁ ବଲୋକ ଦୂରୁ ଚନ୍ଦ୍ରା କେତେ ହୃଦରୁ
ହୋଇଲା ଅନ୍ତର । ୨ ।
ଗତ ରଜନୀରେ ଯାହା କଲେ ମୋହନ ତାହା
ଥିବ ତ ଗୋଚର । ୩ ।
ସେ ଯେନ ରାଧା ପ୍ରାଣର ଆଶା ତେଜ ଆନ୍ତର
ଶୁଣୁନାହିଁ ଗିର । ୪ ।
ବୃନ୍ଦା କହେ ଲଳିତାକୁ ସଦା ନମେ କୃଷ୍ଣଙ୍କୁ
ରାଜ ପୁରନ୍ଦର । ୫ ।

ବୃନ୍ଦା—

(ରାଗ—ଜଂଝୋଟି, ତାଳ—ଏକ)

(ନୋହିଲୁ ଏ ଗୃହ ମହା—ବୃତ୍ତ)

କହିବାକୁ ମୋର ବଦନୁ ନସ୍ଫୁରେ ଗିର
ଦେଖି ଯା ଆସିଲି ସହି ଅବସ୍ଥା ସେ ମୋହନର । ପଦ ।

ପଲ୍ଲବ ଶୟନ
ସଜାଇ କରି ଶୟନ ବୁଜ ସେ ବେନି ନୟନ
ଉଚ୍ଚାରେ ନାମ ରାଧାର । ୧ ।

ବିରହ କୃଶାନୁ
ତାପରେ ଜରତେ ତନୁ ଦହଇ ପାପ ଅତନୁ
ପ୍ରହାରେ ଶରନିକର । ୨ ।

ଏ କଷ୍ଟ ବାରଣ
କରିବୁ ତୁହି ନଦାନ ତୁମ୍ଭର ବହିନେ ଜାଣ
ନାହିଁ ସାହସ କାହାର । ୩ ।

ବୃନ୍ଦାଦେବୀ ବାଣୀ
ଲଳିତା ଭାଷିଲ ଶୁଣି ଭଣେ ରାଜ-ବଜ୍ରପାଣି
କର କୃଷ୍ଣଙ୍କୁ ଜୁହାର । ୪ ।

ଲଳିତା—

(ରାଗ—କଲ୍ୟାଣୀ, ତାଳ—ଏକ)

(ଧିକ ହେଉ ଧିକ ହେଉ ଆମ୍ଭ ସଉଭାଗ୍ୟ—ପ୍ରଭୃତି)

ସଜନି ମୋ ଆଗେ ଆଉ ଏ ଭାଷ ନ ଭାଷ । ପଦ ।

ଥରେ ହେଲେ ସେହି ଧୂର୍ତ୍ତ ନାଗର ସନ୍ଦେଶ
ଜଣାଇବାକୁ ତ ନାହିଁ କାହାର ସାହସ । ୧ ।
ରାଧାର ହୃଦୟେ କ୍ରୋଧ ପ୍ରଚଣ୍ଡ ହୁତାଶ
ଶ୍ୟାମ ନାମ ଶ୍ରବଣରେ ଜଳଇ ବିଶେଷ । ୨ ।
ଛାଡ଼ିଲଣି ସବୁରୂପେ ଜୀବନର ଆଶ
କେବଳ ଆମ୍ଭର ଯତ୍ନ ବିଫଳ ପ୍ରୟାସ । ୩ ।
ଅଛି ପୌର୍ଣ୍ଣମାସୀଠାରେ ତା ଭକ୍ତି ବିଶ୍ୱାସ
ସେହି ଗତି ଜବେ ତାଙ୍କୁ ସଙ୍ଗେ ଘେନି ଆସ । ୪ ।
ବୃନ୍ଦା ଯାଇ କହେ ସବୁ ପୌର୍ଣ୍ଣମାସୀ ପାଶ
ବନ୍ଦିଲେ ରାଜେନ୍ଦ୍ର କୃଷ୍ଣ ଶ୍ରୀପଦ ସାରସ । ୫ ।

ବୃନ୍ଦା—

(ରାଗ—ଭୈରବୀ, ତାଳ—ଏକ)

(ରଙ୍ଗରଞ୍ଜନ ରେ ପଙ୍କଜବାସି—ପ୍ରଭୃତି)

ଘେନ ପୌର୍ଣ୍ଣମାସୀ ମୋ ନିବେଦନ
କାହୁଁ ଥିଲା ଏହି ବିଧି ଘଟନ । ପଦ ।

ଶ୍ୟାମଠାରେ ରାଧା ବାନ୍ଧି ଗୁମାନ
ହଟିଛୁ ଛେଜବ ନଷ୍ଟେ ଜୀବନ ; ୧ ।
ସଖୀଗଣଙ୍କର ହିତ ବଚନ
ନ ଶୁଣେ କ୍ରୋଧରେ ମଜାଇ ମନ । ୨ ।
ଏଣେ କୃଷ୍ଣ ଛବ୍ର କାମ କଦନ
ବଂଶୁ କଣ୍ଠେ ଆସିଅଛୁ ଜୀବନ । ୩ ।
ଜବେ ଯାଅ ଜଟିଳାର ଭୁବନ
ରାଜଇନ୍ଦ୍ର କରେ କୃଷ୍ଣ ବନ୍ଦନ । ୪ ।

ପୌର୍ଣ୍ଣମାସୀ—

(ରାଗ—ଖମାଚ, ତାଳ—ଏକ)

(ସଜନ ବୃଥା ବଳାସମାନଙ୍କୁ—ପ୍ରତି)

ଆହା ଏ ଦଶା କି ଦେନ ଗୋ ଆସି
ଘଟିଲା ମାରଦକେଶି । ପଦ ।

ଆକୁଳିତ ହୁଏ ଚିତ୍ତ କହ ଏ ଚରିତ
ମୋ ଆଗେ ବସେଣି । ୧ ।
କାହିଁକି ଶ୍ୟାମେ ଶ୍ରୀମତୀ ଅଭିମାନ ରୀତି
ଅଛୁ ପରକାଶି । ୨ ।
କି ଅପରାଧକୁ ଆଜ ଅଛନ୍ତି ଅରଜି
ନିକୁଞ୍ଜବିଳାସୀ । ୩ ।
ବୃନ୍ଦା ସକଳ ଚରିତ କହନ୍ତେ ଦୁଃଖିତ
ହୋଇ ପୌର୍ଣ୍ଣମାସୀ । ୪ ।

ବୃନ୍ଦାକୁ ଶ୍ରୀକୃଷ୍ଣ ପାଶେ ପେଷି ରାଧା ବାସେ
ଗଲେ ହୋଇ ତୋଷି । ୫ ।
ରାଧା ବନ୍ଦିଲେ ଆସ୍ଥାସେ ପୌର୍ଣ୍ଣମାସୀ ଭାଷେ
ରାଜଇନ୍ଦ୍ର ଭଣି । ୬ ।

ପୌର୍ଣ୍ଣମାସୀ—

(ରାଗ—କାମୋଦୀ, ତାଳ—ରୂପକ)
(ସୁନ୍ଦରୀ କୁନ୍ଦବୃନ୍ଦ ବନ୍ଦ୍ୟ ମନ୍ଦ—ବୃତ୍ତ)

ଆହା କି ଦୁଃଖଶ୍ରେଣୀ ପାଇଲୁ ସଙ୍ଖାଳି ରେ । ପଦ ।
ଏହି କେତେ ଦିନୁ ଥିଲି ମାନସରେ ଭାଳି
ଦେବାକୁ ଏହି ଖପତ୍ତି ତୋତେ ମୋ ଗଳାମାଳି ରେ । ୧ ।
ଝାଉଁଳିଯାଏ ତ ତନୁ ଖରର ହାଉଳି ରେ
ସେହି କୋମଳାଙ୍ଗ ହୁର ସନ୍ତାପ ଦିଏ ଜାଳି ରେ । ୨ ।
ତେଜ ମାନସରୁ ମାନ ନମା ଗିର ପ୍ରତିପାଳି ରେ
ଏଣିକ ହସିବେ ସିନା ଜାଣି ଏ ବ୍ରଜବାଳୀ ରେ । ୩ ।
ଶୁଣି ଭଣିଲି ବିଶାଖା କୋପେ ଭ୍ରୂବଲ୍ଲୀ ଖ୍ଳ ହୋ
କିଶୋରଚନ୍ଦ୍ର ରାଜେନ୍ଦ୍ର ସତତ କୃଷ୍ଣ ଭାଳି ହୋ । ୪ ।

ବିଶାଖା—

(ରାଗ—ଜଂଝୋଟି, ·ତାଳ—ଏକ)
(ନାହିଁ ମୋର ଦୋଷ ଲେଶ—ବୃତ୍ତ)

ପୋଡ଼ିଲା ଆମ୍ଭ କପାଳ ଗୋ ଜାଣ ଜନନ । ପଦ ।
କାହାକୁ କହିବୁ କିସ ନିଜେ ଅରଜିବା ଦୋଷ
ଭୋଗିବୁ ଆମ୍ଭେ କେବଳ ଗୋ । ୧ ।

ସଜନୀଙ୍କୁ ଅନୁସରି କହିବାର କର ଧରି
ଅଛୁ କି ଆଉ ସେ କାଳ ଗୋ । ୨ ।

ଶ୍ୟାମ ସୁମଧୁର ଭାଷ ଶୁଣି କଲୁ ଯା ବିଶ୍ୱାସ
ପାଇଲୁ ସେଥିର ଫଳ ଗୋ । ୩ ।

ନୋହିଲେ କି ରାତିଅଧେ ଡାକିନେଇ ବନ ମଧେ
ଦିଅନ୍ତା ଏ ଦୁଃଖଜାଳ ଗୋ । ୪ ।

କରି ନାଗରିମାବୃତ୍ତି ରଖି ଗୋ ବ୍ରଜେ ତା କୀର୍ତ୍ତି
ସେ ପରି ଗୋପଭୂପାଳ ଗୋ । ୫ ।

କୁଳବତୀଙ୍କି ଯେ ଆଶା କରାଇ ନାଶେ ସହସା
ଯୁବା କିବା ଯମ ଭାଳ ଗୋ । ୬ ।

ଶୁଣି ପୌର୍ଣ୍ଣମାସୀ ଭାଷେ ରାଜେନ୍ଦ୍ର ଦେବ ହରଷେ
କୃଷ୍ଣ ନାମେ ହେଲେ ଭୋଳ ଗୋ । ୭ ।

ପୌର୍ଣ୍ଣମାସୀ—

(ରାଗ—ଆନନ୍ଦଭୈରବୀ, ତାଳ—ଏକ)

(ପ୍ରିୟସହି କାହିଁକି ଏ ବମନ—ବୃତ୍ତ)

ବିଶାଖା ଗୋ ନ କହ ଏ ବଚନ
ଯଥାର୍ଥରେ କହେ ଯା ତାହା ଶୁଣ । ପଦ ।

ଘଟିବାରୁ ପ୍ରବଳ ପ୍ରତିବନ୍ଧ
ମୋହନଙ୍କ ହେଲା ଅପରାଧ । ୧ ।

ତାଙ୍କ ଦଶା ବୃନ୍ଦା ବଦନୁ ଶୁଣି
ଆହା ମୋର ହୃଦ ହୁଏ ହାଣି । ୨ ।

ଉଠିବାକୁ ଶ୍ରୀଅଙ୍ଗେ ନାହିଁ ବଳ
ସଦା ନେତ୍ରୁ ବହୁଛି ଅଶ୍ରୁଜଳ । ୩ ।

ରାଧା ରାଧା ବୋଲି ସେ ନିରନ୍ତର
ଲଲାଟରେ ମାରୁ ଅଛନ୍ତି କର । ୪ ।

ଅଟନ୍ତି ତ ବିଶ୍ୱଜନ ଅବନ
ଯୋଗୀଜନ ସେବ୍ୟ ପତିତପାବନ ।୫।

କାହା ଭାଗ୍ୟ ଅଛି ତାଙ୍କ ସେବନ
ସେହୁ ପରା ଗୋପୀଜନ ଜୀବନ ।୬।

ଭଲ ନୁହେ ସେହ୍ନ କୃଷ୍ଣ ଅଭିମାନ
ରାଜଇନ୍ଦ୍ର କରେ କୃଷ୍ଣେ ବନ୍ଦନ ।୭।

ଲଳିତା—

(ରାଗ—ଖମାଚ, ତାଳ—ଏକ)
(ବଣଇ କି ଶୋଭନ—ବୃତ୍ତ)

ଘେନ ଘେନ ମୋ ବାଣୀ
ପ୍ରାଣ ମିତଣି
ବରଜ ମାନସୁ ରୋଷ କହୁଛି ଧରି ତୋ ପାଣି । ପଦ ।

ଆଜ୍ଞା ଦେଲେ ପୌର୍ଣ୍ଣମାସୀ ଯାହା ରେ ତମାଳକେଶୀ
ବୃନ୍ଦାଦେବୀ ତାହା ଆସି
କହିଲେ ମତେ ଏକ୍ଷଣି । ୧ ।

ଛତେ ଝୁରି ସେ ମୋହନ ତେଜିବେ ଯେବେ ଜୀବନ
କି ହେବ ଆମ୍ଭର ପ୍ରାଣ
ଥାଇ କହ ରେ ତରୁଣି । ୨ ।

ଜାଣି ବା ନଜାଣି ଦୋଷ କଲେ ଯେବେ ହୃଷୀକେଶ
ତାହା ରଜନୀ ଦିବସ
ଘୋଷୁଥିବୁ କ କଲ୍ୟାଣି । ୩ ।

ଏ କଥା ଗୋପରେ ଜଣା ନ ପଡ଼ୁରେ ବିଚକ୍ଷଣା
ବଢ଼ାଅ ବେଗେ ମାଜଣା
ପୂଜିବା ପର ଚରଣି । ୪ ।

ଶ୍ରୀମନ୍ତ ଶୁଣି ସେ କାଳେ ପୌର୍ଣ୍ଣମାସୀଙ୍କି ସହିଲେ
ଗଜେନ୍ଦ୍ର ଦେବ ନମିଲେ
ସତତ ମୁରଲୀପାଣି । ୫ ।

ରାଧା—

(ରାଗ—ଖମାଚ, ତାଳ—ଏକ)

(ବ୍ରଜେ କେହି ସଙ୍ଗେ ଏପରି—ପ୍ରଭ)

ସଖୀ ମଥା ମୋତ ଦେନ ମୋ ବିନତି ଗୋ
କରେ ଶ୍ରୀପଦେ ପ୍ରଣତି । ପଦ ।

ଯା ଆଦେଶ ଦେଲେ ଦିଅ ପାଳିବି ନାହିଁ ମୋ ଭୟ
ଆଉ ମାନ ନ ପକାଅ
ଶ୍ୟାମ ପ୍ରସଙ୍ଗ ମୋ କତ । ୧ ।

ଜୀବନ ଯିବାର ମୂଳ ଅଟଇ ମୋର କେବଳ
ପାଇଲଣି ସବୁ ଫଳ
ଲଗିବା ଦିନୁ ତା ପ୍ରୀତି । ୨ ।

ମଦନ ଦହିଲେ ଦହୁ    ତା କାହିଁ ଜଗତେ ରହୁ
ସହି ନ ପାରେ ମୁଁ ଆଜ
ଲୋକହସା ନାନ୍ତ ନାନ୍ତ । ୩ ।

ଶୁଣି ସେ ବୃନ୍ଦା ରହିଲେ    ରାଜେନ୍ଦ୍ର ଦେବ ନମିଲେ
ସେ ଶ୍ରୀକୃଷ୍ଣ ପାଦ ତଳେ
ମନ ଦେଇ ହବାରନ୍ତ । ୪ ।

ପୌର୍ଣ୍ଣମାସୀ—

(ରାଗ—ଜଂଝୋଟି, ତାଳ—ଏକ)

(ଇନ୍ଦୁମୁଖୀ ଭୁଲୁନେଇକା ଏଲ—ପ୍ରଭ)

ରେ ଜଗତବନ୍ଦନ ପ୍ରିୟ ନନ୍ଦନ ଚନ୍ଦ୍ରାନନ । ପଦ ।

ଶ୍ୟାମ ଯେବେ    ବର ଜବେ
ଏ ଗୋପକୁ ତୋ ଘେନ
ଏ ଗୌରବ    ଏ ବାଭବ
ରହିବକ ମାନନ । ୧ ।
ଯୋଗୀଜନ    ଯା ସେବନ
ନ ଲଭନ୍ତି ମାନନ
ତାରେ ମାନ    କଲେ ଧନ
ହେବ କାହାର ହାନି । ୨ ।
କେତେ ଉପ-    ଦ୍ୱାର ଗୋପ-
ନଗରେ ନ ହେଲଣି
ତା କୃପାରୁ    ସିନା ଆରୁ
ହୋଇଛେ ସୌଭାଗିନୀ । ୩ ।

ଅଙ୍ଗୀକାର କର ମୋର
ପ୍ରିୟ ଗିରକୁ ମାନ
ଆସୁ ଥରେ ମୋ ସଙ୍ଗରେ
ରୋ ବିଶ୍ୱାସୀ ସଜନୀ ।୪।
ରାଧା ଶୁଣି ଭଣେ ବାଣୀ
ହୋଇ ଅତି ଦଇନୀ
ରାଜଇନ୍ଦ୍ର କୃଷ୍ଣଚନ୍ଦ୍ର
ଧାଏ ଦିବା ରଜନୀ ।୫।

ରାଧା—

( ରାଗ—ଜଂଝୋଟି, ତାଳ—ରୂପକ )

( ଆହା ସେ ଚାରୁଅଙ୍ଗୀ ଭ୍ରୂଭଙ୍ଗିଖେଳା—ପ୍ରଭୃ )

ଘେନ ଗୋ ପୌର୍ଣ୍ଣମାସୀ ଜନନୀ ମୋ ବାଣୀ
ତୁମ୍ଭେ ତ ଏ ଜୀବନର ସ୍ୱାମୀ ଲଭକୁ କାରଣୀ । ପଦ ।

ତୁମ୍ଭ ଆଦେଶ ନକର ମୋ ମଣ୍ଡନ ଅଲଙ୍କାର
କ୍ଷମା କର ଯା ନିଷ୍ଠୁର ଗିର କହିଲି ନ ଜାଣି ।୧।

ଯାହା ଇଚ୍ଛା ତାହା କର ମତେ ଗୋ ଜୀବ ଈଶ୍ୱର
ତୁମ୍ଭ ପଦ-ପରିକରଗଣେ ମୁଁ ଅଟେ ଅଗ୍ରଣୀ ।୨।

ଲଳିତା ଯାଉ ସଙ୍ଗତେ ବିଜେ କର ଗୋ ତ୍ୱରିତେ
ବାହୁଡ଼ି ସେଠାରୁ ଏଥେ ଆସିବେ ତ ନୋହି ଗ୍ଲାନି ।୩।

ପୌର୍ଣ୍ଣମାସୀ କୃଷ୍ଣ ପାଶେ ଯାଇ ଭଣିଲେ ହରଷେ
ଶ୍ରୀ କିଶୋର ରାଜଇନ୍ଦ୍ର ନମିଲେ ସେ ବେଣୁପାଣି ।୪।

ପୌର୍ଣ୍ଣମାସୀ—

( ରାଗ—ଝିଂଝୋଟି, ତାଳ—ଏକ )

( ମୋଠାରେ ଏପରି ପରିବାଦ—ପ୍ରଭୃ )

ଉଠ ହେ ମୋହନ ଏ ଅବସ୍ଥା କାହିଁକି
ମୁଁ କହିବା ବାଣୀ ବୃନ୍ଦା ଦେବୀ କହି ନାହିଁକି । ପଦ ।

ଦେଖି ତୁମ୍ଭ ଏ ଦଶା ଭାଜିଯାଏ ଭରସା
ଛାଡ଼ୁଛ ଜୀବନ ଆଶା
ତୁମ୍ଭର ଏଥିପାଇଁକି । ୧ ।

ଏହିକ୍ଷଣି ମୁଁ ଯାଇ ପ୍ରିୟ ବଚନ କହି
ଆସିଲିଣି ସମଜାଇ
ନବନୀତଦେହୀକି । ୨ ।

କର ଚିନ୍ତାକୁ ଦୂର ନଥିଲେ ତା ସ୍ୱୀକାର
ପଠାନ୍ତାନି କି ତୁମ୍ଭର
ପାଶେ ପ୍ରିୟ ସଖୀକି । ୩ ।

କଷ୍ଟେ ଉଠି ଶ୍ରୀହରି ଘେନିଲେ ଦୁଃଖେ ପୂରି
ଭଣିଲେ ରାଜେନ୍ଦ୍ର ସୁରି
କୃଷ୍ଣ ପଦ ଦୁଇକି । ୪ ।

କୃଷ୍ଣ—

( ରାଗ—ମୁଖାରି, ତାଳ—ଏକ )

( ବଞ୍ଚିବଟି କିରୂପେ ସେ ଶ୍ୟାମ—ପ୍ରଭୃ )

ଏହା ଥିଲା ଜନନୀ ମୋର କପାଳେ । ପଦ ।

ସୁଯୋଗ ଅବରୁଁ ଘଟିଲା ଏସବୁ
ନାହିଁ ମୋ ଦୋଷ ତଳେ । ୧ ।

ଅକାରଣେ କାହ୍ନ ଯାହା ବାଞ୍ଛାବଲ୍ଲୀ
ଉପୁଡ଼ିଲା ସମୂଳେ । ୨ ।

ଏହେତୁ ମୋଚିତ୍ତ ହୁଅଇ ସନ୍ତପ୍ତ
ଗାଢ଼ ଚିନ୍ତା ବଳକଳେ । ୩ ।

ଦେବ କି ଉତ୍ତର ଆଗେ ଲଳିତାର
କଥା ନଟ୍ଟୁରେ ଲୋକେ । ୪ ।

ପୌର୍ଣ୍ଣମାସୀ ବୋଲେ ବ୍ରଜେନ୍ଦ୍ର ସେକାଳେ
କୃଷ୍ଣପଦେ ନମିଲେ । ୫ ।

ପୌର୍ଣ୍ଣମାସୀ—

( ରାଗ—କଲ୍ୟାଣୀ, ତାଳ—ଏକ)

( ହେଲ୍ ହେଲ୍ ଶ୍ୟାମ ଆଉ—ପ୍ରଭୃ )

ଗଲା କଥା ମୋହନ ହେ ନ ପକାଅ ମାନସେ । ପଦ ।

ସାରବ ନୃତ୍ୟ ବିଧାନ କର ପୁରକୁ ଗମନ
ଜାଣି ଦିନ ଅବସାନ
ଆସିବନ୍ତି ହରଷେ । ୧ ।

ଏହି ମାଧବିକା କୁଞ୍ଜେ ଏକାନ୍ତେ କୁସୁମ ଶେଯେ
କରିଥିବ ନିଶ୍ଚେ ବିଜେ
ମନମୋହନ ବେଶେ । ୨ ।

କହିଲ ତ ସମଜାଇ ତାର ମନକୁ ମଜାଇ
ଦୁଃଖେ ଶତ୍ର ନମଜାଇ
ଥିଲ ଧନ ବରସେ । ୩ ।

ଲଳିତା ରାଧାଙ୍କୁ ଘେନ ଆସିବ ମୋ ଗିର ମାନ
କୃଷ୍ଣ ପ୍ରତି ନାମଶ୍ରେଣୀ
ରାଜେନ୍ଦ୍ର ସ୍ୱରେ ତୋଷେ । ୪ ।

ଗାହାକ—

( ରାଗ—କଲ୍ୟାଣୀ, ତାଳ—ଏକ )

(ଶୁଣ ମୋର ବାଣୀକ ହେ ମୋହନ—ପ୍ରତି)

ଶୁଣ ଦେଇ ଶତ୍ରୁକୁ ହେ କୁବେରନନ୍ଦନ । ପଦ ।

ଶୁଣି ପୌର୍ଣ୍ଣମାସୀ ଗିର ହର କର ସ୍ୱୀକାର
ଲଜ୍ଜାଭରେ ତଳକୁ ନମ୍ର କର ଲପନ । ୧ ।

ନମି ତାଙ୍କ ପଦଯୁଗେ ପ୍ରବଳ ଅନୁରାଗେ
ମେଲଣି ହୋଇ ତହୁଁ ପୁରେ କଲେ ଗମନ । ୨ ।

ବୃନ୍ଦାଙ୍କୁ ସେ ପୌର୍ଣ୍ଣମାସୀ ଫରମାସିଲେ ହସି
ପ୍ରତି କେଳୀସଦନ କର ବୋଲି ମଣ୍ଡନ । ୩ ।

ଲଳିତାଙ୍କୁ ସଙ୍ଗେ ଧରି ବପିନରୁ ବାହାରି
ପ୍ରବେଶ ହେଲେ ଯାଇ ଶ୍ରୀମତୀ ସନ୍ନିଧାନ । ୪ ।

ଏକାଳେ ରାଧାଙ୍କୁ ତୋଷେ ଲଳିତା ସ୍ନେହେ ରୋଷେ
ଭଣେ କିଶୋରଚନ୍ଦ୍ର କୃଷ୍ଣପଦ ନଳନ । ୫ ।

ଲଳିତା—

(ରାଗ—ହିନ୍ଦୁସ୍ଥାଣୀ ଭୈରବୀ, ତାଳ—ଏକ)

( ପ୍ରେମ ଲେଦା ଏଗାଲେ ଚେଲି—ପ୍ରଭୃ )

ଯାହା ଦେଖି ଆସିଲି ସହି
ତାହା ବଚନେ ଗୋ କହି ନୋହି । ପଦ ।

ମୋହନଙ୍କ ଦଶା ବଚନ୍କ ସୁଦୃଶା
ଧରି ପାରବକ ଧୃତି କେହି । ୧ ।

ପ୍ରସ୍ରବଣ ଗିରି ପରି ନେନ୍ତୁ ବାରି
ଝରି ହେଉଛି ପଙ୍କିଲ ମହି । ୨ ।

ସଜଲ ନଳିନୀ ପଲ୍ଲବ ସଜନୀ
ଶ୍ୟାମ ଅଙ୍ଗ ବାଜ ହୋଏ ଦହି । ୩ ।

ଅମ୍ବର ବଲମ୍ବ ହୋଇଥିଲେ ଲବ
ଦେଖନ୍ତୁକ ତାଙ୍କ ମୁଖ ଯାଇ । ୪ ।

କରୁ ଆଶ୍ୱାସନା ଦଣ୍ଡକେ ଚେତନା
ପାଇ ସେ ଭାଷିଲେ ରାଧା କାହିଁ । ୫ ।

ଭାଷିଲେ ଶ୍ରୀମତୀ ରାଜଇନ୍ଦ୍ର ନତ
ନମେ କୃଷ୍ଣ ପାଦପଦ୍ମ ଧାଇ । ୬ ।

ରାଧା—

(ରାଗ—ମୁଖାରି, ତାଳ—ଏକ)

(ହେ ନବ ନାଗରୀ ମନମୋହନ—ପ୍ରଭୃ)

ଆହା ମୋ ପ୍ରେମ ଲଭିଲେ କେତେ କଦନ । ପଦ ।

## ବସନ୍ତ ରହାସ

ପର୍ପକ ଦର୍ପଣ ଗଣ୍ଡେ ଲୋଚକ ବନ
ଅବିରତେ ବହ୍ନି ସତେ ହୋଇଥିବ କାନ୍ତହୀନ । ୧ ।

ଥପୂକୁ ଲଭ୍ଯ ନଥିବ କେବଳ ମନ
ଦହ୍ନି ଦେଉଥିବ ହୃଦ ପ୍ରବଳ କାମ ଦହନ । ୨ ।

ନବୀନ ଘନ ରୁଚିର ସେ ଅପଘନ
କୃଶ ହୋଇଥିବ ଧିକ ଧିକ ମୋର ଅଭିମାନ । ୩ ।

ହସେ ପୌର୍ଣ୍ଣମାସୀ ଶୁଣି ରାଧା ବଚନ
ଶ୍ରୀ କଶୋରଚନ୍ଦ୍ର ଧ୍ୟାଏ ଶ୍ରୀକୃଷ୍ଣ ପଦ ନଳିନ । ୪ ।

ପୌର୍ଣ୍ଣମାସୀ —

(ରାଗ—ଆହାରୀ, ତାଳ—ରୂପକ୍)

(ଆରେ ଏ ମାଧୁରୀ ଦିଶଇ କି ଶୋଭନ—ପ୍ରଭୃତି)

ନିଖିଳ ତରୁଣୀଗଣ ମଥାମଣି
ଶୁଣ ମୋ ବାଣୀ ପଞ୍ଚାଳି ରେ । ପଦ ।

ନୂଆ ରୁ ବିକଳ          ଯେତେ ଅମଙ୍ଗଳ
ଗଲା ଆଜ୍ର ନବବାଳି
ଆମ୍ଭେ ବେନି ଜନେ          ଗଲୁ ଯେ ବିପିନେ
ନାନା ଶଙ୍କା ମନେ ଘେନି । ୧ ।

ଦେଖିଲୁ ବୃନ୍ଦାର          କୋଳେ ଦେଇ ଶିର
ପଡ଼ିଛନ୍ତି ବନମାଳୀ
ସଙ୍କେତ କରାଇ          ଆସିଲି ବୋଧାଇ
ତତେ ପଠାଇବି ବୋଲି । ୨ ।

ପ୍ରଦୋଷୁଁ ସୁବେଶେ ଯାଇ ତାଙ୍କ ପାଶେ
ସଙ୍ଗେ ଘେନି ସବୁ ଆଳୀ
ଗମି ହରଷରେ କୌତୁକ ରସରେ
ଆରମ୍ଭିବୁ ରାସକେଳୀ । ୩ ।

ଶ୍ରୀମଣ୍ଡଳ ଋଷି ଗଲେ ପୌର୍ଣ୍ଣମାସୀ
ଶ୍ରୀକୃଷ୍ଣ ପଦଯୁଗଳ
ଶ୍ରୀ କିଶୋରଚନ୍ଦ୍ର ଦେବ ରାଜଇନ୍ଦ୍ର
ନମେ ନତ ଚିତ୍ତେ ଭାଳ । ୪ ।

ରାହାକ—

(ରାଗ—ଶଙ୍କରାଭରଣ, ତାଳ—ରୂପ୍)

(ରାଧା ସ୍ତନ କନକ କୁମ୍ଭାନ୍ତରେ ନଖରେଖ—ପ୍ରଭୃ)

ଶୁଣ କମ୍ପର ରସ ଦିବସ ହେଉ ଶେଷ
ଆରକ୍ତିମା ପ୍ରକାଶ ହେଲା ପ୍ରତୀଚୀ ଦିଶ । ପଦ ।

ଆନନ୍ଦେ ସଖିଗଣ ନିତ୍ୟକର୍ମ୍ମ ବିଧାନ
ଆଦି ରବି-ପୂଜନ ସାରି କଲେ ଶୟନ । ୧ ।

ତେଣେ ଘନବରନ ହୋଇ ଉତ୍ସୁକମନ
ଏକାକୀ ବୃନ୍ଦାବନ ମଧ୍ୟେ କଲେ ଗମନ । ୨ ।

ଜ୍ୟୋତ୍ସ୍ନା ତ ଘନଘନ ଆସଇ ପୁନପୁନ
ନୟନ ଥନଥନ ମାନସ ଛନଛନ । ୩ ।

କୃଷ୍ଣ ରାଧାଙ୍କୁ ଧ୍ୟାଇ ଭଜିଲେ ଉତ୍କଣ୍ଠା ବହି
ଶ୍ରୀହରି ନାମ ଗାଇ ରାଜଇନ୍ଦ୍ର ନମଇ । ୪ ।

କୃଷ୍ଣ—

( ରାଗ—ଫୀଲୁ , ତାଳ—ଜୃମ୍ )

(ଆମ୍ଭଠାରେ ଉଚିତ କି—ପ୍ରଭ)

ଆଜ ମୋର ପ୍ରାଣବନ୍ଧୁ ଆସି
ଏ କାମ କଦନ ଦେବ କି ନାଶି । ପଦ ।

କାହ୍ନିଁକି ମାଳ- କୁଞ୍ଚିତ କେଶୀ
ବିଳମ୍ବ କରଇଁ ହେଲ୍ନି ତ ନଶି । ୧।

ପ୍ରିୟ ସଜନୀ ସଙ୍ଗତେ ମିଶି
ଆସୁଥିବେ କହୁଥିଲେ ପୌର୍ଣ୍ଣମାସୀ । ୨ ।

ଦୂରୁ ତାହାର ଶ୍ରୀମୁଖ ଶଶୀ
ମଣ୍ଡଳର ଶୋଭା ଯିବ ତ ପ୍ରକାଶି । ୩ ।

କଵା କାଳର ପ୍ରସଙ୍ଗ ଘୋଷି
ବଜେ ନ କରିବ ହୋଇ ମୋରେ ଦ୍ୱେଷୀ । ୪ ।

ବୃନ୍ଦା ଏକାଳେ କହେ ଆଶ୍ୱାସି
ରାଜେନ୍ଦ୍ର କୃଷ୍ଣଙ୍କୁ ନମେ ହୋଇ ତୋଷି । ୫ ।

ବୃନ୍ଦା—

( ରାଗ—ହିନ୍ଦୁସ୍ଥାନୀ ଭୈରବୀ, ତାଳ—ଜୃମ୍ )

( କାନକାରମ୍ଭ ଲେଦେ ଓ୍ୱାନକନାପାଇ—ପ୍ରଭ )

ଘେନ ମୋହର ବାଣୀ ମୁରଲୀପାଣି । ପଦ ।

ଚେଜ ବରସ
ରାଧାଙ୍କୁ ହରଷେ ବେଶ
କରଥିବେ ସେ ପ୍ରିୟ ସଖୀଶ୍ରେଣୀ । ୧ ।
ନମିଷେ ବଜେ
କର ଏ ମାଧବୀ କୁଞ୍ଜେ
ସାର ସୁବେଶ ଆସିବେ ଏକ୍ଷଣି । ୨ ।
ବ୍ରଜରେ ଲଂଘି
ପାରବ କେଉଁ ଶୁଭଙ୍ଗୀ
ପୌର୍ଣ୍ଣମାସୀଙ୍କ ଆଦେଶକୁ ଶୁଣି । ୩ ।
କୃଷ୍ଣ ଏକାଳେ
ରାଧାଙ୍କୁ ଦେଖି ଭାଷିଲେ
ରାଜେନ୍ଦ୍ର ନମେ ସେ ମୁରଲୀପାଣି । ୪ ।

କୃଷ୍ଣ—

( ରାଗ—ସେବେନା, ତାଳ—ଗ୍ରୁପ୍ )

( ମୋ ଦୁଃଖିଧନ ପଦ୍ମଲୋଚନ—ପ୍ରଭୃ )

ରେ ପ୍ରାଣଧନ ରଙ୍କରତନ
ଗତ ରଜନୀରେ ଏ ଘନ ବନରେ
ପାଇଲୁ ମୋ ଲଗି ଆହା କ କଦନ । ପଦ ।
ତୋ ମଞ୍ଜୁ ମଞ୍ଜୀର ସ୍ୱନ ତାଳେ ସ୍ମର
ନାଚଲାଣି ହୃଦେ ଧର ଧନୁବାଣ । ୧ ।
ବଜେ କର ଝସ- ଧ୍ୱଜ କେଳୀରସ
ଭୁଞ୍ଜାଇ ଭୁଞ୍ଜିବୁ ପର ରେ ଜୀବନ । ୨ ।

ବତର ମଧୁର- ଧରୁ ସୁଧାଧାର
ଦନ୍ତର ଚନ୍ଦ୍ରକୁ ଢ଼ରନା ରେ ଧନ । ୩ ।

ବିଧୁରବଳସ୍ତୀ ସ୍ବର ଯୋଷା ହୋଇ
ଚମକବୁ ନଜ ଦେଖି ନଖ ମୁନ । ୪ ।

ଶୁଣି ଏ ଭାରଣ ଭଣିଲେ ଶ୍ରୀମଣି
ବନ୍ଦଲେ ରାଜେନ୍ଦ୍ର ଶ୍ରୀକୃଷ୍ଣ ଚରଣ । ୫ ।

ରାଧା--

(ରାଗ—ଶଙ୍କରାଭରଣ, ତାଳ—ରୂପକ)

(କାହିଁ ହଜିଲ୍ ମନ୍ତ—ପ୍ରଭ)

ମୋ ପ୍ରାଣବନ୍ଧୁ ଆହେ । ପଦ ।

ମୁହିଁ ଏକା ଏତକ ଦୁଃଖେ ଦେଲ ବୋଲି ଚିତ୍ତେ ରଖ
ନ ଶୁଖାଅ ଆଜ ଶ୍ରୀମୁଖ ପାବଣ ଇନ୍ଦୁ । ୧ ।

ଅଛୁ ତୁମ୍ଭଙ୍କୁ ମୋ ଶପଥ କହୁଛୁ ଧରି ଶ୍ରୀହସ୍ତ
ନକର କଞ୍ଜ ନେତ୍ରୁ ଜାତ ଲୋତକ ବିନ୍ଦୁ । ୨ ।

କାଲି ରାତ୍ର ମଧ୍ୟେ ଯା ଘୋର ବିପତ୍ତିକି ବେଦବର
ଘଟାଇଲ୍ ଜାଣ ମୋହର କରମ ମନ୍ଦୁ । ୩ ।

ଶୁଣି ଭଣିଲେ କୃଷ୍ଣ ଗିର ଶ୍ରୀ କିଶୋର ନିଶାକର
ଭାଷେ ହରି ଜବେ ଉଦ୍ଧର ଏ ଭବବନ୍ଧୁ । ୪ ।

କୃଷ୍ଣ—

(ରାଗ—ଧନ୍ନାସୀ, ତାଳ—ରୂପକ)

(ଚେଣ୍ଣୁ ହୃଦ ଆହା ଦହି ଦଏ—ପ୍ରଭ)

ଆସ ଆସ ବନ୍ଧୁ ମୋ ଉରଙ୍ଗେ ବିଜେ କର ରେ
ମୁହିଁ ତୋ ଶିର ପଶଗ୍ବର ରେ । ପଦ ।·

କର ଫରମାସ ପାଇ ନିର୍ଦ୍ଦେଶ
ହାଜର ହେବ ନଉକର ରେ । ୧ ।

ମୋଦଭରେ ଖଟରେ ଲଦ ମୋ ଉରେ
ତୋ ପୀନ ପୟୋଧର ଭର ରେ । ୨ ।

ଯତନେ କବରୀ ବାନ୍ଧି ମକରୀ
ଗଣ୍ଡେ ଲେଖିବ ମନୋହର ରେ । ୩ ।

ଶ୍ରୀ କିଶୋରଚନ୍ଦ୍ର ଦେବ ରାଜଇନ୍ଦ୍ର
ନମେ ନିତ୍ୟ କୃଷ୍ଣ ପୟର ରେ । ୪ ।

ରାଧାକ—

( ରାଗ—କଲ୍ୟାଣୀ, ତାଳ—ରୂପ୍ )

(ଆଗୋ ଏଣୀମାନେ ମୋର ମାନସହାର—ପ୍ରଭ)

ଶୁଣ ହେ କାନ୍ତର ସେହ୍ନ ମନମୋହନ
ରାଧାର ସ୍ୱୀକାର କର ଅନୁମାନ । ପଦ ।

ବାସନ୍ତିକ କୁଞ୍ଜ ତଳପେ ସତ୍ୱର
ବିଜେ କଲେ ହରି ଧରି ରାଧା-କର
ବେଢ଼ି କୁତୂହଳେ ସଙ୍ଗିମା ନିକର
କଲେ ସେବାକୁ ହୋଇ ମୋଦଭର ।୧।

ବିଶାଖା ଲଳିତା ବୋଳିଲେ ଚନ୍ଦନ
ଚିତ୍ରା·ଇନ୍ଦୁଲେଖା ଗୁଳିଲେ ବ୍ୟଜନ
କେ ଦିଏ ତାମ୍ବୂଳ କେ ଧରେ ଦର୍ପଣ
ତେ ତୋଷେ ଗୁଟିଲ ଚରଣ ନଳିନ । ୨ ।

ବୃନ୍ଦାଙ୍କ ପ୍ରଭାବୁଁ ପଞ୍ଚଯୁଂଷ୍ଟ ପୂଜି-
ଥିବାରୁ ସେ ବନ ସୁଷମାକୁ ହେରି
ଗମିଲେ ସକଳେ ରାଧା ସଙ୍ଗେ ହରି
ଆନ କୁଞ୍ଜକୁ ଗଲେ ତ ବିହରି । ୩ ।

ଏଣେ ସେ ବୃନ୍ଦାଙ୍କୁ ପ୍ରଶଂସି ସକଳେ
ବୃନ୍ଦାବନ ଶୋଭା ଦର୍ଶନେ ମଜ୍ଜିଲେ
ବିଶାଖା ପ୍ରମୋଦେ ବୃନ୍ଦାଙ୍କୁ ଭଣିଲେ
କିଶୋରଚନ୍ଦ୍ର କୃଷ୍ଣଙ୍କୁ ବନ୍ଦିଲେ । ୪ ।

ବିଶାଖା—

( ରାଗ—ଆହାରୀ, ତାଳ—ରୂପ୍ )

(ଆସିବେ ଏହିକ୍ଷଣି ରେ ସହି—ପ୍ରଭି)

କେଡ଼େ ଶୋଭନ ଦିଶେ ଏ ବନ
ରୁହାଁ ନେଟାନ୍ତ ଡ଼ାଳ ରେ । ପଦ ।

ସୁଖର ସଙ୍ଗେ ଶୁଆ କି ରଙ୍ଗେ
ଖେଳଇ ଲତାଦୋଳରେ । ୧ ।

ବରଜ କ୍ରୀଡ଼ା କରଇ ଙ୍କୀଡ଼ା
ଗଣିକା ଅଙ୍କେ ଅଳ ରେ । ୨ ।

ମରନ୍ଦ ଧାର        ଝରଣ ଧର
ଦଶେ ଦୁର୍ଦ୍ଦିନ ଭଜ ରେ । ୩ ।

ଶେଯ ଚରାଗେ        ସାଜ ସରାଗେ
ଅଚ୍ଛୁ ବାସନ୍ତୀ ଆଳୀ ରେ । ୪ ।

ପ୍ରକୃତି ସତୀ        ସ୍ମର ନୃପତି
କରନ୍ତି ନବ କେଳୀ ରେ । ୫ ।

ଏଣେ ଶ୍ରୀମତୀ        କୃଷ୍ଣେ ଭାଷନ୍ତି
ପ୍ରୀତିରୀତିକି ପାଳ ରେ । ୬ ।

ଭଣେ ରାଜେନ୍ଦ୍ର        କରୁଣା ସାନ୍ଦ୍ର
କୃଷ୍ଣଙ୍କୁ ସଦା ଭଜ ରେ । ୭ ।

ରାଧା—

(ରାଗ—ସରାଠା, ତାଳ—ଏକ)

(ଜାଲକେ ସେ ଭାରେ ଯମୁନା—ପ୍ରଭୃତି)

ମୋ ସୁବେଶ ସବୁ ନାଶିଲ ମୋହନ । ପଦ ।

ଚୁମ୍ବ ଗୁମ୍ଫୁତ୍ର ହର        ଯାଇ ମୁଁ କପର
ଗୃହିଁବ ସଜଣୀଙ୍କ ବଦନ । ୧ ।

କହିବେ ସହଚରୀ        କି କରମ କରି
କର-ମକରୀ କଲୁ ନାଶନ । ୨ ।

ଦେବି କି ଉତ୍ତର        ଆହା ମୋ ଅଧର
କାହିଁକି କଲ ଶ୍ୟାମ ଖଣ୍ଡନ । ୩ ।

ଗଣ୍ଡକୁ ହୋଇ ଭୋଳ        ଖଣ୍ଡ ଖଣ୍ଡ କଲ
ଖଣ୍ଡରୁ ମିଠା କି ସେ ମୋହନ । ୪ ।

ସାରଥିଲ କି ବଶୁ ଉଲ୍ଲାସେ ଗଲସୁ
କୁସୁମ-ରସ କର ଗୋପନ । ୫ ।

ଶୁଣି ଭଡିଲେ ହର ଗଜେନ୍ଦ୍ର ଜୁହାର
ଧାଇଲେ କୃଷ୍ଣ ପଦ ନଳନ । ୬ ।

କୃଷ୍ଣ—

(ରାଗ—ଆରଭୀ, ତାଳ—ଏକ)
(ନମାର ଆଉ ଶ୍ୟାମ ଗୁଲାଲ—ପ୍ରଭି)

ଧନରେ ତୁ ମୋ ନୟନ-କାରା
ଘନ ପୀନ ବର୍ତ୍ତୁଳ ପୟୋଧରା । ପଦ ।

ନଖିଳ ଅବନୀ- ସାର ନତମ୍ବିନୀ-
ମଣ୍ଡଳୀ ମଉଳ ନଆଳ ଝରା
କ୍ଷମା ଗୁଣେ କ୍ଷମା ରମାରେ ତୁ ରମା
ତାରୁଣ୍ୟ ମଦାମୋଦ ସୁମଧୁରା । ୧ ।

ମନମଥ ଜ୍ୱର ଉନ୍ମାଦେ ଅସ୍ଥିର
ହୋଇଥିଲ ଶୁଚ ରସପସରା
ପ୍ରୀତି ଲୀଳାକ୍ରମ ସବୁ ତ ବଧମ
କେତେ ସାବଧାନ ହେବ ସୁଧୀରା । ୨ ।

ସ୍ନେହ ଥିଲା ଠାରେ କି କଥା ନସରେ
ସାରସାର ଆଉ ଯାଏ କି ଝରା
ବନ୍ଧୁ-ଦାହକର ପ୍ରଚଣ୍ଡାଂଶୁ କର
ମୃଦୁ ପଦ୍ମିନୀର ସୁଖଦ ପରା । ୩ ।

କାଶୀ କ୍ଷେତ୍ରବରେ ଝାସି ଶିବା ବରେ
ଚଢ଼ାଇଥିଲି ମୁଁ କେତକୀ ପତ୍ର
ମୋ ଅଙ୍କ ସୌଭାଗ୍ୟ ଲକ୍ଷ୍ମୀରୂପେ ରାଗ-
ଲତା ଅବତରି ମଣ୍ଡିଲୁ ଧରା । ୪ ।

ସଜନୀ ନକରେ ହେଉ ଏକଠାରେ
ରାଧାଙ୍କୁ ଭାଷିଲେ ବୃନ୍ଦା ସଧୀର
ଶ୍ରୀ କିଶୋରଚନ୍ଦ୍ର ବନ୍ଦେ କୃଷ୍ଣଚନ୍ଦ୍ର
ପାଦପଦ୍ମ ଯୁଗ କରି ଆଶର । ୫ ।

ବୃନ୍ଦା—

(ରାଗ—ଜଂଝୋଟି, ତାଳ—ଏକ)

(ଗଣବଣା-ଏଣୀନେତ୍ରା—ପ୍ରଭୃ)

ବୃଂଷଭାନୁ ପ୍ରିୟ ଜେମା ଶୁଣ ମୋର ବାଣୀ
ନଖିଳ ବ୍ରଜସୁନ୍ଦରୀଗଣ ମଥାମଣି । ପଦ ।

ତୋ ପୂର୍ବ ସୁକୃତ ବଶେ ବିଶୁଦ୍ଧ ପ୍ରଣୟ ପାଶେ
ବନ୍ଧା ହୋଇଛନ୍ତି ସଖୀ
ଏ ମୁରଲୀ ପାଣି । ୧ ।

ସ୍ୱାଧୀନଭର୍ତ୍ତୃକା ହୋଇ ଆନରେ ବିରେର୍ଧୀ ନୋହି
ସୁହୃଦୟା ଗୁଣ ଭବେ
ପ୍ରସରୀଅ ଧନି । ୨ ।

ମୋହନଙ୍କୁ କହି ତୋଷେ ଡକାଅ ଏ ବନଦେଶେ
ଚନ୍ଦ୍ରାବଳୀ ଆଦି ସବୁ
ବରଜ ତରୁଣୀ । ୩ ।

ସେମାନଙ୍କ ସଙ୍ଗେ ମିଳି ଆରମ୍ଭ ଗୋ ରାସକେଳୀ
ପବିତ୍ର ଲଭିବ ଆଜ୍
ଏ ବନ ଧରଣୀ । ୪ ।

ଶୁଣି ଶ୍ରୀମତୀ ଉଲ୍ଲାସେ ଭାଷିଲେ ସଖୀଙ୍କ ତୋଷେ
କିଶୋରଚନ୍ଦ୍ର ରାଜେନ୍ଦ୍ର
ନମେ ବଂଶୀପାଣି । ୫ ।

ରାଧା—

(ରାଗ—ଆରଭି, ତାଳ—ଏକ)

(ଜଦାନୁକାରେ ବାରିଜାତାଳ—ପ୍ରଭୃ)

ନବଛଇଲ ମାନସହାରି ହେ
ବିଶ୍ୱପାବନକାରି । ପଦ ।

ମୋ ଆଶା-ବଲ୍ଲରୀ ବଦନ ପଲ୍ଲବିତ କର ମୋହନ
ବରଷି ଦୟା ରସ-ବାରି ହେ । ୧ ।

କୋଇଲ ସଦୃଶ ସୁସ୍ୱରେ ଆକର୍ଷଣ କରି ଚିତ୍ତ ଧୀରେ
ଅଣାଅ ବ୍ରଜନାଗରୀ ହେ । ୨ ।

ସେହି ମଞ୍ଜୁଳାଙ୍କ ସଙ୍ଗରେ ନମନ୍ତି ରାସ-ରଙ୍ଗରେ
ଦେବା ଏ ଭବବାରି ପାରି ହେ । ୩ ।

ଶ୍ରୀ କିଶୋରଚନ୍ଦ୍ର ରାଜେନ୍ଦ୍ର ଦେବ ନମି ଶ୍ରୀକୃଷ୍ଣଚନ୍ଦ୍ର
ବନ୍ଦିଲେ ଦିବାରାତ୍ର ସ୍ମରି ହେ । ୪ ।

ଗାହାକ—

(ରାଗ—ଆନନ୍ଦଭୈରବୀ, ତାଳ—ଝୁମ୍ପ୍)

(କାଳନ୍ଦୀତୀରରେ ବଂଶୀ—ପ୍ରଭ)

ଶୁଣ କନ୍ନର ହରଷେ
ରାଧା ଶ୍ରୀକୃଷ୍ଣ ରସିବେ ରାସ-ରସେ । ପଦ ।
ମୋହନ ଶ୍ରୀମଞ୍ଚ ଗିରେ
ମୁରଲୀକ ନବେଶିଲେ ମଧୁରାଧରେ । ୧ ।
ନାଦ ଶୁଣି ନାରୀଗଣେ
ମୋଦେ ଶପ୍ତନ ବରଜ ଗଲେ ସେ ବନେ । ୨ ।
ଯାହା ଦେଖିଲେ ନକୁଞ୍ଜେ
ରାଧାଙ୍କୁ ଘେନ କୃଷ୍ଣ କରଛନ୍ତ ବଜେ । ୩ ।
ଚନ୍ଦ୍ରାବଳୀ ରାଧା ପାଣି
ଧର ଭଷିଲେ ବନସ୍ଥ ସପ୍ରେମ ବାଣୀ । ୪ ।
ମୋଦଭରେ ସେ ମାଧବ
ପଦାରବନ୍ଦେ ନମିଲେ ରାଜେନ୍ଦ୍ର ଦେବ । ୫ ।

ଚନ୍ଦ୍ରାବଳୀ—

(ରାଗ—ସିନ୍ଧୁଖମାଚ, ତାଳ—ଏକ)

(ଉତ୍ତମ ସ୍ନେହ ଯହିଁ ପ୍ରକାଶଇ—ପ୍ରଭ)

ଶାରଦଚନ୍ଦ୍ରମୁହିଁ ପ୍ରିୟସହ । ପଦ ।
କପଟ ସ୍ୱଭବ ବରଜ ରାଜୀବ-
ନେବ ଗ୍ରମୁରେ କହ । ୧ ।

ଅଣାଇଲୁ ଯାହା ଆମ୍ଭଙ୍କୁ ସୁଦେହା
ହୃଦୟେ ଦୟା ବହ । ୨ ।

ଥିବାଯାକ ପ୍ରାଣ ତୁମ୍ଭର ଏ ଗୁଣ
ଶୁଝିବୁ ଆମ୍ଭେ କେହ୍ନ । ୩ ।

କ୍ଷମା ଦୟା ଗୁଣେ ତୋ ସମାନେ ଜଣେ
ନାହିଁ ରେ ମୋଦମୟି । ୪ ।

ଶୁଣି ରାଧା ଭାଷେ ବ୍ରଜେନ୍ଦ୍ର ହରଷେ
ଶ୍ରୀକୃଷ୍ଣ ପଦ ଧ୍ୟାୟି । ୫ ।

ରାଧା—

(ରାଗ—ଜଂଝୋଟି, ତାଳ—ଏକ)

(ଇନ୍ଦୁମୁଖୀ ଓାଳକ ମାନା—ପ୍ରଭ)

ଶୁଣ ଶୁଣ ବାଣୀକ ମୋର ପ୍ରାଣସଙ୍ଗିନୀ
ଶୁଚି ରସରଙ୍ଗିଣୀ । ପଦ ।

ଗୋପ ନଗରେ ଯେତେ ଅଛେ ଆମ୍ଭେ କାମିନୀ
ବହଇବା ଏ ବୃନ୍ଦାବନେ ଶ୍ରୀହରିଙ୍କି ଘେନି । ୧ ।

କାହିଁକ ବୃଥା ହୋଇବା ପରସ୍ପରେ କୋପିନୀ
ଏ ଶ୍ୟାମ ବନ୍ଧୁ ସମସ୍ତ ହୃଦ ଆନନ୍ଦଦାୟୀ । ୨ ।

ଚନ୍ଦ୍ରମୟୂଖଜାଲରେ ଶୋଭାପାଏ ଯାମିନୀ
ଚନ୍ଦନ ସୁମନାନଲେ ସୌରଭମୟ ବନୀ । ୩ ।

କେଳୀ କରିବା ମିଳି ଆଜ ସବୁ ସଜନୀ
ହୋଇଛନ୍ତି ତ ଶ୍ରୀହରି ରସରେ ସାବଧାନୀ । ୪ ।

ଭଣିଲେ କୁଞ୍ଜ ବାହାର ହର ମଣ୍ଡି ଅବନୀ
ବ୍ରଜେନ୍ଦ୍ର ଶ୍ରୀକୃଷ୍ଣ ପାଦେ ନମେ ଦେବା ରଜନୀ । ୫ ।

କୃଷ୍ଣ—

(ରାଗ—ଜଂଝୋଟି, ତାଳ—ଝୁମ୍)

(ବାଗାନେ କ ଫୁଲ୍ ଫୁଟେଛି—ପ୍ରଭୃ)

ଆଗୋ ମୋ ବନ୍ଧୁ ଆମାନେ
ଆସ ବହନେ । ପଦ ।

ରାସ କଉତୁକେ ମାତ ଘୁଆଇଦେବା ଏ ରାତ
ମାର ମଦହର ଲୀଳା ବିଧାନେ । ୧ ।

ମୋ ହୃଦ କେଳୀଲାଳସୀ ଦକ୍ଷହରେ ରାଧା ରସି
ତୋଷ କରୁ ଶତ୍ର ମଧୂର ଗାନେ । ୨ ।

ମୋ ଗଳା ରତନ ମାଳୀ ବାମେ ରହୁ ଚନ୍ଦ୍ରାବଳୀ
କରତାଳ ଧରି ନାଚୁ ସୁମନେ । ୩ ।

ବିବିଧ ବାଜାରେ ରସି ବିଶାଖାଦି ମଦାଳସୀ
ନୃତ୍ୟେ ବିହରନ୍ତୁ ହରଷ ମନେ । ୪ ।

ଶୁଣି ସର୍ବେ ହେଲେ ସଜ ଶ୍ରୀକିଶୋରଚନ୍ଦ୍ର ରାଜ-
ଇନ୍ଦ୍ର ନମେ କୃଷ୍ଣ ପଦେ ରଜନୀଦିନେ । ୫ ।

ଗାୟକ—

(ରାଗ—ନାଦନାମକ୍ରିୟା, ତାଳ—ଏକ)

(ମନୋହର କ ହୃଦୁ ମୁରଲୀ କାକଳି—ପ୍ରଭୃ)

ଶୁଣ ନଳକୂବର ସ୍ଥିର କରି ମନ । ପଦ ।

ଭରମ ରମ୍ଭାଦଳ, ଚରମ ଭାଗେ ଫଣୀ
ବେଣୀନୃତ୍ୟ ରଚୁ, ଚଳୁ ନାସାମଣି—ଦାଦା । ୨ ।

ଦୋହଲ କରୁ କେଳ, ସୁର ମୁକୁର ଝଳ
ଗଣ୍ଡମଣ୍ଡଳରେ କଲମା ଯୁଗଳ—ଦାଦା । ୩ ।

ଏକାଳେ ମୋହନଙ୍କୁ ରାଧା ଭାଷିଲେ ମୋଦେ
ରାଜେନ୍ଦ୍ର ମଉଳ ଲୋଟେ କୃଷ୍ଣପଦେ—ଦାଦା ।୪।

ରାଧା—

(ରାଗ—ଶଙ୍କରାଭରଣ, ତାଳ—ରୂପ୍)

( ଭ୍ରମରା ମଧୁ କି ଖାଏ କମଳଫୁଟ ହେଲେ—ପ୍ରଭୃ )

ମୋ ପ୍ରାଣବନ୍ଧୁ ଧୀରେ ନାଚ ହେ ଶ୍ରୀଅଙ୍ଗ ଡ଼ାଳ
ଗୁରୁ ଚନ୍ଦ୍ରକ ଚୂଳ କର୍ଣ୍ଣ ଧୈର୍ଯ୍ୟ ଦେଉ ଟାଳ । ପଦ ।

ଫେର ଫେର ଘୁର ପାଶେ ହେର ରହସ୍ୟ ହରଷେ
ଦେଖି ଆମ୍ଭ ଜନ୍ମ ଧନ୍ୟ
କରବୁ ହେ ବନମାଳ । ୧ ।

ଝଳ ଅଳ କରେ ଖେଳ ଲଳିତ ଅଳକାବଳ
ଚଳଦଳ ଲୀଳା ଦଳ
ଦେଉ ମନ୍ଦ ମନ୍ଦ ଚଳ । ୨ ।

ତୁମ୍ଭ କୃପାରୁ ଶ୍ରୀହରି ଆମ୍ଭ ପଦେ ସ୍ୱର୍ଗ ଶିରୀ
ଲୋଟିବ ଭବାବଧାରି
ହେ ପ୍ରପନ୍ନାବନଶାଳ । ୩ ।

ଶୁଣି ସବେଁ ପ୍ରେମ ଭୋଳେ ନୃତ୍ୟ ଆରମ୍ଭି ଘଡ଼ିଲେ
ଗଜେନ୍ଦ୍ର ବାଞ୍ଛେ ସତତ
ଶ୍ରୀକୃଷ୍ଣ ପ୍ରପଦ ଧୂଳ । ୪ ।

ଚନ୍ଦ୍ରାବଳୀ—

(ରାଗ—ଖମାଚ, ତାଳ—ଝପ୍)

(ବାଲ୍ ଚଟେଓ୍ ଇନ୍ଦ୍ରା ଗ୍ଧଲୁ—ପ୍ରତି)

ଧନ ହେ ମନମୋହନ ବନଜ ସ୍ୱେର ନୟନ
ଅନଘ ଗୁଣ କେତନ
ବୃନ୍ଦାବନ ଭକ୍ତୋଲ୍ଲାସୀ । ପଦ ।
ଶୁଆଖିଆ ବିମ୍ବ ଭଳ ହେଲ ମୋ ଅଧର ଦଳ
ଆଉ ନପାରେ ସମ୍ଭାଳ
ଗୁଡ଼ ହେ କୁଞ୍ଜବିଳାସି । ୧ ।

କୃଷ୍ଣ—

ଅନଙ୍ଗରଙ୍ଗ ରଙ୍କାଳ ଅଟେ ତ ମୁହିଁ ସଙ୍କାଳ
ମୋ ହୃଦ କେଳୀମରାଳ
ଶ୍ୟାମଳ ଭ୍ରମରକେଶି । ପଦ ।
ନ ଛାଡ଼ିବ ତତେ ଆଉ ଯାହା ହେବଲେ ପଛେ ହେଉ
ଅଧର ମଧୁକୁ ପିଉ
ପିଉ କେହ୍ନେ ଯିବ ଖସି । ୨ ।

ରାଧା—

ହାଲଆ ହେଲନ ଅତ ଖେଳ କଉତୁକେ ମାତ
ଶିଥିଳ କର ହେ ଗ୍ଧନ୍ତ
ଏ ଅର୍ଗଳ ବାହୁ ପାଣି । ୩ ।

କୃଷ୍ଣ—

ଗଣ୍ଡେ ଲଗାଇ ଲପନ ଦଅ ଗୋଟିଏ ଚୁମ୍ବନ
ଲାଜ ନ କର କଠିନ
ସ୍ତନ ବକ୍ଷେ ଯାଅ ଘଷି । ୪ ।

ଲଳିତା—

ଛାଡ଼ ଛାଡ଼ ମୋ ବେଣୀକି କହୁଛୁ ଧରି ପାଣିକି
ଛପାଇବା ଅଙ୍ଗେ ନକ
ଖେଳାଅ ଦୁରନ୍ତ ଅସି । ୫ ।

କୃଷ୍ଣ—

ଶୃଙ୍ଗାର ରସସାଗରୀ ଶିଖିଛୁ କେତେ ଚାତୁରୀ
କୁଟିଳନେତ୍ର କଟାକ୍ଷୀ
ମାର ଘାତୁ ଇସିଙ୍ଗି । ୬ ।
କିଶୋରଚନ୍ଦ୍ର ରାଜେନ୍ଦ୍ର ଦେବ ଗୋପ ବ୍ୟୋମଚନ୍ଦ୍ର
ପଦେ ନମେ କୃପାସାନ୍ଦ୍ର
ହୃଦୟେ ରଖ ଆଶ୍ୱାସି । ୭ ।

ରାଧାଙ୍କ—

(ରାଗ—ଶଙ୍କରାଭରଣ, ତାଳ—ତ୍ରିପୁଟ୍)
(ଆଜ ଏ ଯୁବତୀ ଲାଜେ ଦୂରୁ ରହେ—ପ୍ରଭୃତି)

କୁବେରନନ୍ଦନ
ଶୁଣ ଶୁଣ ସ୍ଥିର କର ମନ । ପଦ ।
ଏପରି ରାସେ ଶ୍ରୀଧର ସକଳ ବ୍ରଜନାଗରୀ
ସଙ୍ଗରେ ରଙ୍ଗେ ବିହରି
ରଚିଲେ ରାସ ବିଧାନ । ୧ ।

ହରଷେ ବୃନ୍ଦା ଏକାଳେ ଅମ୍ବର କଳସି ଆଣିଲେ
ଶ୍ରୀହରି ଦେଖି ଫିଙ୍ଗିଲେ
ମହିଳାଙ୍କ ମର୍ମସ୍ଥାନ । ୨ ।

ଆନନ୍ଦେ ମଜ୍ଜି ଶ୍ରୀମତୀ ଆଦି ସକଳ ଯୁବତୀ
ବାଣ୍ଟି ଧଇଲେ ଝଟତି
କଟିରେ ଭିଡ଼ି ବସନ । ୩ ।

କେ ମାରେ କାହା ପୁରତେ କେ ଆଡ଼େ ଶାଢ଼ୀ-ପଣନ୍ତେ
ଉଆଏ କେ ଧରି ହସ୍ତେ
ଦୂରରୁ ପୋଛି ବଦନ । ୪ ।

କେ କାହାର ମୁଖେ ବୋଳେ କେ ମାରଇ ବକ୍ଷସ୍ଥଳେ
କେ କାହାକୁ ଧରି ବଳେ
ଅମ୍ବରେ କରଇ ସ୍ନାନ । ୫ ।

ଶ୍ରମ ପାଇ ସର୍ବେ ଖେଳେ ମଜ୍ଜିଲେ ଯମୁନା ଜଳେ
ଶ୍ୟାମ ରାଧାଙ୍କୁ ଭାଳିଲେ
ରାଜେନ୍ଦ୍ର କରେ ବନ୍ଦନ । ୬ ।

କୃଷ୍ଣ—

(ରାଗ—ଶଙ୍କରାଭରଣ, ତାଳ—ଏକ)

(ପରବ ଚନ୍ଦ୍ରବଦନା କୋରକଜାତ—ପ୍ରଭ)

ପଣ୍ଡିତାକୁଳ ମଣ୍ଡନା ଚଣ୍ଡୀଶ ଧୃତ ଖଣ୍ଡନା । ପଦ ।

ଦର ବିକାଶ ଚନ୍ଦ୍ରମା କଳ ଯୁଗଳ ଅନା ଅନା
ତୋ ପୟୋଧର ସୁଷମା ମାନସେ କର କାମନା । ୧ ।

ନରତେ ମଗ୍ନ ହୋଇଛୁ ଜଳରେ କରକ ରଦନା
ଜଡ଼ ସଂସର୍ଗୁ ହେଲନ ବିଷ ପ୍ରସୂନେ ଗଣନା । ୨ ।

ଚହଟିବାରେ ବନ୍ଧୁ ତୋ ରୁଚିର ଶ୍ରୀଅଙ୍ଗ ବାସନା
ମାରଜରାଜ ମୁଦ୍ରିତ ହେଲେ ସପାରେ ନବୀନା । ୩ ।

ଚିକୁର ଗୃହୀଁ ଶୈବାଳ ଲୁଚିଛୁ ହୋଇ ଭପ୍ନମନା
କି ଗୁଣେ ହେବ ଏ ସମ ଧିକ ଧିକ ଏହାର ନା । ୪ ।

ଶ୍ରୀମତୀ ଭଷେ ଏକାଳେ କୃଷ୍ଣଙ୍କୁ ହୋଇ ମୋଦମନା
କିଶୋରଚନ୍ଦ୍ର ରାଜେନ୍ଦ୍ର କୃଷ୍ଣଭବ କଲେ ଭାବନା । ୫ ।

ରାଧା—

(ରାଗ—କାଫୀ, ତାଳ—ଏକ)

(କାନା ବଂଶୀବାଲେନା ଗାଗାର—ପ୍ରଭ)

ସାର ସୀମନ୍ତମା ମନମାଣିକ୍ୟ ହାର ହେ । ପଦ ।

କରନ୍ତ ଜଳେ କ୍ରୀଡ଼ା କି ମଞ୍ଜୁଳେ
ସଫର୍ଷୀଏ ଫେର ଫେର ହେ
ଭ୍ରମନ୍ତ ନୟନ ଯୁଗ ଶୋଭନ
କର ଗୈର ଚହେ । ୧ ।

ଭ୍ରୂମ୍ନ ପସନ୍ଦ ମନ୍ଦ ବିହସିତ
ତୁଳନା କଣ୍ଠରେ ଧର ହେ
କୈରବବୃନ୍ଦ ହେଲେଟି ଚନ୍ଦ୍ର
ମନୋହାରୀ ହେ । ୨ ।

କଲେ ନିବାସ ଏଥେ ବହ୍ନ ତୋଷ
କ୍ଷୀରୋଦ-ରାଜକୁମାରୀ ହେ
ହେଲ ନଳିନ ନେତ୍ର ଲପନ
ଅନୁକାରୀ ହେ । ୩ ।

ଭଞ୍ଜିଲେ ପର- ସ୍ଥରେ ଏହ୍ନକାଳେ
ବଲ୍ଲବୀଗଣ ଶ୍ରୀହର ହେ
କୃଷ୍ଣଙ୍କ ପାଦେ ରାଜେନ୍ଦ୍ର ବନ୍ଦେ
ମୋଦେ ପୂର ହେ । ୪ ।

କୃଷ୍ଣ—

( ରାଗ—ସିନ୍ଧୁଖମାଚ, ତାଳ—ଏକ )

(କ ଭାଗ୍ୟ ପୂର୍ବେ ଗୁଞ୍ଜାହାର ଅରଜଥିଲି—ପ୍ରଭୃ)

ସଚନ୍ଦ୍ର ଚନ୍ଦ୍ରହାସିନୀ ମୋ ନୟନକାରା
ଆସ ରେ ଜୀବବନ୍ଧୁ ଦେଇ ମୋ କରେ ଉରା । ପଦ ।
ଶିଖାଇଦେବ ବାଳବୀ ମୁଁ ଉଭ ପଦାଁରା
ଖେଳାଅ ବେନି କର କେଳୀ ମରାଳୀ ପରା । ୧ ।

ରାଧା—

ଗର୍ଭର ମାରେ ଭସିଲ ହେ ଶିଖଣ୍ଡୀଝରା
ଗ୍ଣଡ଼ିଦଅ ହେ ଶ୍ୟାମ ମତେ ଏ କି ଝାପରା । ୨ ।

କୃଷ୍ଣ—

ମୋ ପାଣିରେ ନବେଣ ପୀନ ଉରୋଜ ଗିରି
ବୁଡ଼ିଗଲାଣି ନଲଭ ମୁଁ କଣ୍ଠ ଆଶରି । ୩ ।

ଗୋପୀ—

ଜୁହାର ମୋର ଅଞ୍ଚଳ ଗୁଣ୍ଡ଼ ଛାଡ଼ିଲା ହାରି
କାହିଁକି ମୁହିଁ ତୁମ୍ଭ ଆଗେ ପଡ଼ିଲି ଧରି । ୪ ।

କୃଷ୍ଣ—

ଜଣା ପଡ଼ିଲାନି ତୁମ୍ଭ ନୟନଠାରି
ଏକା ହୋଇବ ସବୁ ନବଘନ ଚକୁରି । ୫ ।

ଚନ୍ଦ୍ରାବଳୀ—

ପଳାଇଯିବ କାହିଁ ଲମ୍ପଟ ବସନଚୋରି
ବୁଡ଼ ପାଦକୁ ଝିଙ୍କି ମାରି ନୟନ-ଛୁରି । ୬ ।

କୃଷ୍ଣ—

ମୋ ପୃଷ୍ଠଭାଗରୁ ବରଷି ସଲିଳ ଧାରି
ଧାଇଁଯିବୁ ତୁ କେତେ ଦୂର ପଙ୍କଜାଧରି । ୭ ।

ବିଶାଖା—

ମସାର ଶ୍ୟାମକାନ୍ତ ଲୁହ ମାନସେ ଭରି
ଦୁଃଖୀପଡ଼ିବ ପଣାଖେଳେ ଗୃଭୁଯଂ ପରି । ୮ ।
ବାସନ୍ତୀକୁଞ୍ଜେ ବୃନ୍ଦା ପଣାପାଳି ସଧୀରି
ପାରିଲେ ନମେ ଗଜଇନ୍ଦ୍ର ଶିଖଣ୍ଡିଧରି । ୯ ।

କୃଷ୍ଣ—

(ରାଗ—ବେହାଗ, ତାଳ—ଝୃପ୍)

(ରାଧାର ରୂପମାଧୁରୀ ଆହା କ—ପ୍ରଭୃତି)

ରଙ୍ଗୀବନ୍ଦେସା ରେ ଆଜ    କୁଞ୍ଜକେ ଖେଳବା ଫଶା
ନାଗ ନର ନାକ ଲୋକ    ନଗରୀ ନାଗରୀ ଭୂଷା । ପଦ ।

ସଙ୍ଗେ ଲେନ ଚନ୍ଦ୍ରାବଳୀ    ବସ ତୁ ହଳଦ ପାଲି
ଏ ଲଳିତା ବିଶାଖାକୁ    ପଚ ପାଲି ପଟେ ବସା । ୧ ।

ଶସା ପଦ୍ମା ମୋର ସଙ୍ଗୀ    ସାର ନେବ କାଳ ରଙ୍ଗି
ବୃନ୍ଦା ବସିବେ ମୋ ସଙ୍ଗେ    ତୋ ପକ୍ଷ ସକଳ ପୋଷା । ୨ ।

ହାରବ ଯେବେ ଛଇଲ    ମୋ କରୁ ନେବ ମୁରଲୀ
ତୁମ୍ଭେ ହାରିଲେ କ ଦେବ    କନ୍ଧ ରେ ମଞ୍ଜୁଳବେଶା । ୩ ।

ଶ୍ରୀମତୀ ଏ ଗିର ଶୁଣି    ଭାଷିଲେ ବନସ୍ପୁ ବାଣୀ
ବ୍ରଜେନ୍ଦ୍ର ନମେ ଶ୍ରୀକୃଷ୍ଣ    ପାଦପଦ୍ମେ ଦବାନଶା । ୪ ।

ରାଧା—

(ରାଗ—ଜଂଝୋଟି, ତାଳ—ଝୃପ୍)

(ବାତାଦେ ସଖି କୋନ୍ ଗାଲମେ ଗାୟା ଶ୍ୟାମ—ପ୍ରଭୃତି)

ବିଶ୍ୱମୋହନ
ରସିକ-ଶିରମଣ୍ଡନ । ପଦ ।

ଭଲ ଆଦେଶ    କଲ ବେଗେ ଆସ
ଖେଳେ ବୁଝାଯିବ ଠାଣ । ୧ ।

ଦେବୁ ଆମ୍ଭର ଯାବୁ ଅଳଙ୍କାର
ହାରିଲେ ଏହା ପ୍ରମାଣ । ୨ ।

ଶିଖଣ୍ଡମୁକ୍ଟର ହେଲେ ତୁମ୍ଭ ହରି
ବଂଶୀ ନେବୁଟି ନଦାନ । ୩ ।

ମାନ କପଟ କରି ବାନ୍ଧ ପଟ
ନ କରିବ ହୋଇ ଗ୍ରଣ । ୪ ।

ସକଳ ବାଳା ନ କର ହେଳା
ବାହୁବେ ମୋ ପକ୍ଷେ ଜାଣ । ୫ ।

ମନ୍ତ୍ରିଲେ ଖେଳେ ରାଜେନ୍ଦ୍ର ନମିଲେ
ଶ୍ରୀକୃଷ୍ଣ ପଦ-ନଳନ । ୬ ।

ରାଧା, ଚନ୍ଦ୍ରାବଳୀ—

(ରାଗ—ଶଙ୍କରାଭରଣ, ତାଳ—ଝମ୍ପ)

(ତେରେ ଧୁମୁର ଏ ବାଜେ ଜେରା—ପ୍ରଭୃତି)

କାହିଁ ଯିବ ହେ ବ୍ରଜନାଗରବର
ହୃଦ-ରତନହାର । ପଦ ।

ମନମୋହନ ଛାଡ଼ ଗୁମାନ
ଗୃହିଁ ଗୃହିଁ ପ୍ରଥମେ ଏକା
ପଡ଼ିଲ ଦଶ ମୋର । ୧ ।

କୃଷ୍ଣ—

ଭଲ ବୁଝିବା ଖେଳ ଖଞ୍ଜନାକ୍ଷି
ଆଜ ତୁ ଖେଳିବାର । ପଦ ।

ଡେଇଁ ଏ ପାଲି                    ନବଚ୍ଛଇଲି
ଆସ ଆସ ଲଗକୁ ମୋର
ହୋଇ ଭୁ ଆଗୁସାର । ୨ ।

ବିଶାଖା, ଲଳିତା—
କାଠି ସଜାଡ଼                    ମୁଠିକ ଭିଡ଼
ରଖ କପାଁ ଗଡ଼ାଇଦଅ
ଚଳେ ନ ଲଗୁ କର । ୩ ।

ଚମ୍ପା, ପଦ୍ମା—
ଆତାକୁ ବଳ                    ନ ଯା କଥାଳ
ଜଗି ରହିଥିବା ହଳଦ
ଘରୁ ହେଉ ବାହାର । ୪ ।

ରାଧା, ଚନ୍ଦ୍ରାବଳୀ—
ଜାକ ପକାଇ                    ହୁଡ଼ାଇ ବାହି-
ଯାଅ ପୂର୍ବଗୁଣ୍ଡକୁ କେହି
ଗୁଡ଼ବ ପଟ୍ଟ ରୈର । ୫ ।

କୃଷ୍ଣ—
ଭଙ୍ଗୀରଙ୍ଗିଣୀ                    ଇଙ୍ଗିତ ବାଣୀ
ରଞ୍ଜିବା ମାନେ                    ଚଞ୍ଚଳାନେତ୍ରା
ବଞ୍ଚିପିବ କ ସାର । ୬ ।

ଲଳିତା, ବିଶାଖା—
ପାଶବା ଭଲ                    ଦେଖ ଏ କାଳ
ଆସେ ଆମ୍ଭ ସାରକୁ ଛୋଲ
ଆଳ ଗୋ ମାର ମାର । ୭ ।

ଚମ୍ପା, ପଦ୍ମା—

ଆନ କ ପାଞ୍ଚ ପଡ଼ିଲା ପାଞ୍ଚ
ମଞ୍ଚ ପଞ୍ଚ ବାଣ ହେ
ମନୁ ମୁଞ୍ଚ ହାରିବା ଡ଼ର । ୮ ।

ରାଧା, ଚନ୍ଦ୍ରାବଳୀ—

ପଡ଼ିଲା ଆଠ କାହିଁକି ମଠ
ଫେଇଦଅ ରଙ୍ଗିଯୁଗକୁ
ଦେଖିବ ଯାଉ ତା ଘର । ୯ ।

କୃଷ୍ଣ—

କାଞ୍ଚନଗୋର ମୁଞ୍ଚ ଗୃହୁସି
ପଞ୍ଚ ଆଣ୍ଠ ପାଞ୍ଚ ପଡ଼ିଲା
ବଞ୍ଚା ବଞ୍ଚା ଏଥର । ୧୦ ।

ଲଳିତା, ବିଶାଖା—

ଦୁଷ୍ଟପୂ ପାଞ୍ଚ ପଡ଼ିଲା ଦୁଞ୍ଚ
ଦେଖ ପଶ ଲଗିଛି ପଛେ
ଯିବ ହେ କେତେ ଦୂର । ୧୧ ।

ଚମ୍ପା, ପଦ୍ମା—

ହେ ମାଳହାଣ୍ଟି ଲଗିଛି ବିଭ
ଭାଙ୍ଗି ରଙ୍ଗିଯୁଗ ନ ଗଲେ ;
ମଲେ ହେବ ଅପାର । ୧୨ ।

ରାଧା, ଚନ୍ଦ୍ରାବଳୀ—

ହେ ବିଚକ୍ଷଣ ଚଢ଼ିଲୁ ଦାନ
ହାରିବ କି ନାହିଁ ବୃନ୍ଦାଙ୍କୁ
ଥରେ ଥିରେ ପଶୁର । ୧୩ ।

କୃଷ୍ଣ—

ଚତୁରୀବର ଶୁଭୁଆ ଗିର
ଢେଳ ବନ୍ଧ ପଢ଼ିଲେ ବନ୍ଧୁ
ହାରିବୁଟି ବିଶୁର । ୧୪ ।

ଲଳିତା, ବିଶାଖା—

ସକଳ ପଣ ଗଲ୍ନ ପାଣ
ମିଶିଯିବ ଏକ୍ଷଣି କର
ଆଉ କାହାକୁ ଡର । ୧୫ ।

ଶୈବ୍ୟା, ପଦ୍ମା—

ତୁହିଁ ହଲଦ ମାରଇ ଖେଦ
ଆମ୍ଭ କାଳଯୁଗକୁ ତାର
ପାଶେ କର ହାଜର । ୧୬ ।

ଗାହାକ—

କୃଷ୍ଣ ହାରିଲେ ବିଶାଖା ବୋଲେ
ରାଜଇନ୍ଦ୍ର ବିନୟେ
ନଟମ କୃଷ୍ଣ ମୃଦୁ ପଯୁର । ୧୭ ।

ବିଶାଖା—

( ରାଗ—ସିନ୍ଧୁଖମାଚ, ତାଳ—ଶୁର )
( କାହିଁକି ନ ଦେବୁ ଏବେ—ପ୍ରଭ )
ହାରିଲ ମୁରଲୀକି ଦିଅ ହରି । ପଦ ।

ଶ୍ରୀମୁଖରେ ନାହିଁ ତ ପୂର୍ବ ଶିଖି
ଲଙ୍ଘିବକ ପଣେ ପ୍ରତିଜ୍ଞା କରି । ୧ ।

ନ ଦେଲେ ଶ୍ରୀକରରୁ ବଳେ ହରି
ନେବୁ ଏକା ହୋଇ ସକଳ ନାରୀ । ୨ ।

ଏକାନ୍ତ ସମୟରେ ମୋଦେ ପୂରି
ଚୁମ୍ବିବ କାହାକୁ ଅଧରେ ଧରି । ୩ ।

ଏହାର ଯେନ ନନ୍ଦ ବ୍ରଜେ ହରି
ଏହା ନାଦେ ବାସ ଦେଉ ପାଶୋରି । ୪ ।

ବେଣେ ନ ରଖେ କର ଅଧୂ କରି
ଥାଉ ଆମ୍ଭ ବଶ ହୋଇ ପାମରୀ । ୫ ।

ବୃନ୍ଦା ଘଟେ ଶ୍ରୀକୃଷ୍ଣ ପକ୍ଷ ଧରି
ରାଜେନ୍ଦ୍ର କୃଷ୍ଣଙ୍କୁ ଧ୍ୟାଏ ଜୁହାରି । ୬ ।

ବୃନ୍ଦା—

( ରାଗ—ଜଂଝୋଟି, ତାଳ—ଗୃପ୍ )

( ରେ ସଙ୍ଗିନ କହ କପରି ରହିବ—ପ୍ରଭ )

ହେ ମୋହନ ମୁରଲୀଧାରି
ଚରାଚର ହୃଦବିହାରି । ପଦ ।

କ ଉଣା ଆମ୍ଭର ହେଲା ହେ କେତେ ଥର
ନାରୀଏ ନାହାନ୍ତ ହାରି । ୧ ।

ଶେଷ ହେଲା କଣି ଏଥର ଥିଲେ ବସି
ବୁଝିନ୍ତେ ଏହା ଗୃହୁରୀ । ୨ ।

ପଶାଖେଳ ରଙ୍ଗେ କ୍ଳାନ୍ତ ହେଲ ଶ୍ରୀଅଙ୍ଗେ
ପୂର୍ଣ୍ଣ ହେଲ ଶ୍ରବ ବାର । ୩ ।
କୁଞ୍ଜରେ କଶୋର୍ଯ୍ୟ ଚନ୍ଦ୍ରାବଳୀକ ଧର
ମଧ୍ୟେ ବଜେକର ହର । ୪ ।
ଆଜ ଆମ୍ଭ ନେନ୍ତ ହୋଇପିବ ପବନ୍ତ
ବଲୋକ ଏହ୍ୱ ମାଧୁର୍ଯ୍ୟ । ୫ ।
ଭଣିଲେ ରଜେନ୍ଦ୍ର ମୋଦେ ସେ ବ୍ୟୋମଚନ୍ଦ୍ର
ବନ୍ଦେ ଶ୍ରୀପଦେ ଜୁହାର । ୬ ।

ଗାହାକ—

(ରଗ—କଲ୍ୟାଣୀ, ତାଲ—ଏକ)

(ଶୁଣ ମୋର ବାଣୀକ ହେ ମୋହନ—ପ୍ରଭୃ)

ଶୁଣ ନଲକୂବର ମାନସ କର ସ୍ଥିର । ପଦ ।
ଶୁଣି ବୃନ୍ଦାଦେବୀ ବାଣୀ ତୋଷେ ମୁରଲୀପାଣି
ନକୁଞ୍ଜ ମଧ୍ୟ ତଳ୍ପେ
ବଜେ କଲେ ସତ୍ୱର । ୧ ।
ଚନ୍ଦ୍ରାବଲୀ ବାମ କଣ୍ଠ ଦକ୍ଷିଣରେ ଶ୍ରୀମତୀ
ବସିଲେ ଗୃହପାଶେ
ହେଉ ନାୟକର । ୨ ।
ହୁଲହୁଲ ସ୍ୱନ କର ସବୁ ସେବା ଆଚର
ଭକ୍ତିରସେ ଗୋପୀଏ
ହୃଦ କଲେ ଜର୍ଜର । ୩ ।
ମୋଦେ କେତେ ସହଚରୀ ଅର୍ଘ୍ୟସ୍ଥାଳୀକ ଧର
ସ୍ତବ କଲେ ରଜେନ୍ଦ୍ର
ନମେ କୃଷ୍ଣ ଇଶ୍ବର । ୪ ।

ଗୋପିଗଣ—

(ରାଗ—ଖମାଚ, ତାଳ—ରୂପ୍)

(ମାଙ୍ଗାଲାମାନ ମାଙ୍ଗାଲାମାନ—ପ୍ରଭୃତି)

ଖଞ୍ଜନ ଯୁଗ- ରଞ୍ଜନ ଦୃଗ-

କଞ୍ଜନ ବଦନ ହେ

ଅଞ୍ଜନ ଛବି ପୁଞ୍ଜ ଶୋଭିତ

କୁଞ୍ଜଭୁବନ ହେ । ପଦ ।

ଗୋବର୍ଦ୍ଧନ ଗିରିଧାରୀଙ୍କ ନିତ୍ୟ ମଙ୍ଗଳ

ଧେନୁରକ୍ଷ ପୂତନାରିଙ୍କ ନିତ୍ୟ ମଙ୍ଗଳ । ୧ ।

ଫଣୀଫଣା ନାଟ୍ୟକାରୀଙ୍କ ଦିବ୍ୟ ମଙ୍ଗଳ

ଗୋପୀବୃନ୍ଦ ଚିତ୍ତହାରୀଙ୍କ ନିତ୍ୟ ମଙ୍ଗଳ । ୨ ।

ନନ୍ଦନନ୍ଦ ବ୍ୟୋମଗୃନ୍ଦକୁ ଦିବ୍ୟ ମଙ୍ଗଳ

ଯଶୋବନ୍ତି ନେହାନନ୍ଦକୁ ନିତ୍ୟ ମଙ୍ଗଳ । ୩ ।

ପ୍ରଣମିତ ଭୁବନଗ୍ରରକୁ ଦିବ୍ୟ ମଙ୍ଗଳ

ପୁରୁହୂତ ଗର୍ବହାରୀଙ୍କ ଦିବ୍ୟ ମଙ୍ଗଳ । ୪ ।

ରାଧା ଚନ୍ଦ୍ରାବଳୀ ଏକାଳେ ଦୁଃଖେ ଭାଷିଲେ

ରାଜଇନ୍ଦ୍ର ଦେବ ଶ୍ରୀହରି ପାଦେ ବନ୍ଦିଲେ । ୫ ।

ରାଧା ଓ ଚନ୍ଦ୍ରାବଳୀ—

(ରାଗ—କଲ୍ୟାଣୀ, ତାଳ—ରୂପ୍)

(ହାରି ମାଇ କସ୍ଯା କସ୍ଯା—ପ୍ରଭୃତି)

ଆହେ ବନମାଳୀସ୍ଯା

କାମ କୁତୁକ ଖିଆଳିଆ । ପଦ ।

ହେଉ ନେବ ପାଶ ବାସବ ହରିତ
ହଶିଗଲାନ ରଭାଳଆ
ହଅ ହେ ମେଲଣି ସକଳ ତରୁଣୀ
ପିନ୍ଧୁ କେକୀପିଚ୍ଛଚୂଳଆ । ୧ ।

ସରସିଜ ବାସ ଯେନ ପୃଷଦଶ୍ୱ
ବହିଲ ହୋଇ ଶୀତଳଆ
ହୋଇଲେ ପ୍ରଗ୍ଳତ ସଚିବ ମହନ୍ତ
ନବମୀରଦ ଶ୍ୟାମଳଆ । ୨ ।

ଗୋପେ ଏ ଚରିତ ଯେବେ ହେବ ଖ୍ୟାତ
ହେବୁଟି କୁଳବଟାଳଆ
ଏଣୁ ଦଯ୍ୟା ଚିତ୍ତେ ଥାଉ ଅବିରତେ
ଯାଉଛୁ କଦମ୍ବମୂଳଆ । ୩ ।

ଗୋପୀଙ୍କର ବାକ୍ୟେ ଶ୍ରୀହରି ବରସେ
ଛାଡିଲେ ପୀତଦୁକୁଳଆ
ରାଜେନ୍ଦ୍ର ନମିଲେ କୃଷ୍ଣ ଦୁଃଖଜଳେ
ଚିନ୍ତ ସେ ଧେନୁଧୂଳଆ ।

କୃଷ୍ଣ—

(ରାଗ—ସୁରଠା, ତାଳ—ଏକ)

(ଆଜ ଏ କ ତେଜ ରାଜ—ପ୍ରଭି)

ଏହୁ ଅନୁକମ୍ପା ଶମ୍ପାଗୋରିଏ ମୋତେ
ରଖିଥିବ ଅବିରତେ ହବ୍ୟ ଚିତ୍ତରେ । ପଦ ।

ତୁମ୍ଭେ ପାଶରୁ ଅନ୍ତର ହେଲେ ରୋଷରେ ସାର
ମୋ ସାରିବ ସୁର ଚାମର ଶରେ ।୧।

କ ବୁଦ୍ଧି କରିବ କହ ଭ୍ରମ ବଶରେ
ଯାଅ ବୋଲିବାକୁ ମୁଖୁଁ ବାକ୍ୟ ନ ଫୁଟରେ ।୨।

ଆଜ ଏ ବାସର ଗଣାଯିବ ଯୁଗରେ
ରସରେ ହେଲେ ଦର୍ଶନ ଦେବନି ବାରେ ।୩।

ଏହା କହି ମେଲାଣିକ ଦେଇ ଦୁଃଖରେ
ଗଲେ ରାଜଇନ୍ଦ୍ର ନମେ କୃଷ୍ଣ ପଦରେ ।୪।

ଗାହାକ—

( ରାଗ—କଲ୍ୟାଣୀ, ତାଳ—ରୂପ୍ )

( ଯୁ କାମ୍ କାମ୍ ହ୍ୟାର ସାର୍—ପ୍ରଭୁ )

ହେ ସକଳଗୁଣାଭିରାମ
ବାସବ ନୀଳ ଶ୍ୟାମ ପୂର୍ଣ୍ଣ ଭକ୍ତକାମ
ନିକୁଞ୍ଜ କେଳିଧାମ ।୧।

ଶମିତ ଭୁବନ ଭାର
ଦମିତ ରକ୍ଷ ବୀର ସଂସାର ପାରାବାର
ତାରଣ କର୍ଣ୍ଣଧାର ।୨।

ଯମୁନା-ତୀରସଞ୍ଚର
ବଲ୍ଲବୀ-ହୃଦହାର ଦୃପ୍ତ କୁଳୀଶଧାର
ଗର୍ବ ଖର୍ବକାର ।୩।

କୁନ୍ଦନ୍ ନନ୍ଦନ ବାସ

କୁନ୍ଦ ସୁନ୍ଦର ହାସ ଜନ ମନୋହର ବେଶ

ପଦ ନୁତ ନିଦ୍ଧବେଶ । ୪ ।

ବବୁଧ ବଂଶପାଳ

କଂସ ନୃପତି କାଳ ସୁରୁ ଚନ୍ଦ୍ର କରୂଳ

ବଶ୍ୱ ବଟପୀ ମୂଳ । ୫ ।

ଚକ୍ରି ଠୀ ଧରଣୀନ୍ଦ୍ର

ଶ୍ରୀ କଶୋର ଚନ୍ଦ୍ର ଦେବ ରାଜ-ଇନ୍ଦ୍ର

ନମେ ଶ୍ରୀ କୃଷ୍ଣଚନ୍ଦ୍ର । ୬ ।




ବ୍ରହ୍ମପୁର ଓଡ଼ିଶା ପ୍ରିଣ୍ଟିଙ୍ଗ ୱାର୍କସ୍‌ରେ ଶ୍ରୀ ହାଡ଼ୁ ରାମଗୁରୁଙ୍କ ଦ୍ୱାରା ମୁଦ୍ରିତ ।

୧୯୪୫